# ସାପ

( ପ୍ରଥମ ଭାଗ )

# SAPA (Part-I)

ସଙ୍କଳନ :

ବିଜ୍ଞାନ ଓ ପରିବେଶ ବିକାଶ ସମିତି

ଗୁରୁଜୀ ବୁକ୍ ଷ୍ଟଲ

ଝାଞ୍ଜିରୀମଙ୍ଗଳା, କଟକ-୯

Digitized by PPRACHIN, SOA

# ସାପ

## (ପ୍ରଥମ ଭାଗ)

ସଙ୍କଳନ—ବିଜ୍ଞାନ ଓ ପରିବେଶ ବିକାଶ ସମିତି

ପ୍ରକାଶକ – ଗୁରୁଜୀ ବୁକ୍ ଷ୍ଟଲ,
ଝାଞ୍ଜିରିମଙ୍ଗଳା, କଟକ-୯

ଦ୍ୱିତୀୟ ମୁଦ୍ରଣ—୧୯୯୫

ପ୍ରଚ୍ଛଦ—ଜ୍ଞାନ

ମୁଦ୍ରଣ – ଗୁରୁଜୀ ପ୍ରେସ
ଝାଞ୍ଜିରିମଙ୍ଗଳ, କଟକ-୯

ମୂଲ୍ୟ—ଟ ୧୫-୦୦

# SAPA (Part-I)

Edited by :
**VIGYAN O' PARIBESHA VIKAS SAMITI**

Publsihed by :
**Gurujee Book Stall**
Jhanjirimangala, Cuttack-9

2nd Edition : **1995**

Cover design : **Gyan**

Printed at : **Gurujee Press**
Jhanjirimangala Cuttack-9

Price : **Rs. 15- Only**

Digitized by PPRACHIN, SOA

# ସ୍ୱୀକାରୋକ୍ତି

ବିଜ୍ଞାନକୁ ଲୋକପ୍ରିୟ କରିବା ଓ ଜନଜାଗୃତି କ୍ଷେତ୍ରରେ ସଚେତନତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ସମିତିର ପ୍ରଥମ ପୁସ୍ତକ 'ସାପ' ପାଇଁ ପ୍ରବନ୍ଧ ପଠାଇଥିବା ଓଡ଼ିଶାର ବୈଜ୍ଞାନିକ, ଅଧ୍ୟାପକ, ସାମ୍ବାଦିକ, ଡାକ୍ତର, ଇଞ୍ଜିନିୟର ଓ ପରିବେଶ ପ୍ରେମୀ ବନ୍ଧୁମାନଙ୍କୁ ସମିତି ତରଫରୁ କୃତଜ୍ଞତା ଜ୍ଞାପନ କରୁଛୁ। 'ସମାଜ ଓ ଉତ୍କଳ ପ୍ରସଙ୍ଗ' ସୌଜନ୍ୟରୁ ସଂଗୃହୀତ ପ୍ରବନ୍ଧ ପାଇଁ ସମିତି ଋଣୀ।

ପାଣ୍ଡୁଲିପିଟିକୁ ଆବଶ୍ୟକସ୍ଥ ସଂଶୋଧନରେ ଡାକ୍ତର ଜ୍ୟୋତିର୍ମୋହନ ସେନାପତି, ଡାକ୍ତର ନିତ୍ୟାନନ୍ଦ ସ୍ୱାଇଁ, ଡାକ୍ତର ସଚ୍ଚିଦାନନ୍ଦ ଶତପଥୀ ଓ ବୈଜ୍ଞାନିକ କ୍ଷୀର ସାଗର ବେହେରା ସାହାଯ୍ୟ କରିଥିବାରୁ ସେମାନଙ୍କୁ ଧନ୍ୟବାଦ ଜଣାଉଛୁ।

ଓଡ଼ିଶାର ସୁନାମଧନ୍ୟ ପ୍ରାଣୀ ବିଜ୍ଞାନୀ ଡକ୍ଟର କମଳ କୁମାର ବେହୁରା, ଯାହାଙ୍କ ପ୍ରେରଣା ଓ ଉତ୍ସାହରେ ଏହି ବହିଟି ପ୍ରକାଶ କରିବା ସମ୍ଭବ ହେଲା, ସମିତି ତାଙ୍କଠାରେ ଚିରକୃତଜ୍ଞ।

ଡଃ ସୁଦର୍ଶନ ଶାସମଲ
ସମ୍ପାଦକ

Digitized by PPRACHIN, SOA

# ସୂଚୀ



—*—

Digitized by PPRACHIN, SOA

# ସାପ

## ସାପ ବୋଲି ଭ୍ରମ ହୁଏ

ସାପ ଅନ୍ୟ ସମସ୍ତ ପ୍ରାଣୀଙ୍କଠାରୁ ସ୍ୱତନ୍ତ୍ର । ସେଥିଲାଗି, କେତେକ ଜୀବ ଅଛନ୍ତି, ସେମାନଙ୍କୁ ପ୍ରଥମ ଦେଖାରେ ସାପ ବୋଲି ଭ୍ରମ ହୁଏ । ମାତ୍ର ଭଲ କରି ପରୀକ୍ଷା କଲେ, ସେ ଭ୍ରମ ଦୂର ହୋଇ ଯାଏ । ଗୋଟିଏ ବଡ଼ ଆକାରର ଜିଆ ଦେଖି ସାପ ବୋଲି ଭ୍ରମ ହୋଇପାରେ । ଟିକିଏ ଭଲ କରି ଲକ୍ଷ୍ୟ କରନ୍ତୁ । ଆଗକୁ ପଛକୁ ଉଭୟ ଦିଗରେ ଗତି କରୁଛି କି ? ତା' ଦେହ । ଗୋଲାକାର ମୁଦ୍ରିକାରେ ବିଭକ୍ତ କି ? ଏ ଦୁଇ ବିଶେଷ ଲକ୍ଷଣ ଥିଲେ, ତାହା ଏକ ଜିଆ, ସାପ ନୁହେଁ । ବେଳେବେଳେ ବାମି ମାଛ ଦେଖି ମନେ ହୁଏ, ସାପଟାଏ ପରି । ସବୁ ମାଛଙ୍କର ଜଳରେ ଶ୍ୱାସ-ପ୍ରଶ୍ୱାସ ପାଇଁ କାନକି ଥାଏ । ସାପଙ୍କର, ଜଳଚାରୀ ସାପଙ୍କର ମଧ୍ୟ, ଫୁସ୍‌ଫୁସ୍ ଥାଏ, କାନକି ନଥାଏ । ଲମ୍ବା ଗୋଳ କୃମିକୁ ଦେଖି ସାପ ବୋଲି ଭ୍ରମ ହୋଇପାରେ । ମାତ୍ର ଏମାନଙ୍କ ଦେହରେ ହାଡ଼ ନାହିଁ ।

## ସାପଙ୍କ ବିଷୟରେ ଅନ୍ଧ ବିଶ୍ୱାସ

ଲୁକ୍‌କାୟିତ ସ୍ଥାନରୁ ସାପ ହଠାତ୍ ବାହାରି ଆସି ଚୋଟ ବସାଇ ପଳାଇ ଯାଏ । ସର୍ପ ଦଂଶନରୁ ଆରୋଗ୍ୟ ଲାଭ ପାଇଁ ବୈଜ୍ଞାନିକ ପଦ୍ଧତିରେ ଚିକିତ୍ସା ଆବିଷ୍କୃତ ହେବା ପୂର୍ବେ, ବହୁ କାଳରୁ ଆମ ଦେଶରେ ଓ ଅନ୍ୟାନ୍ୟ ସଭ୍ୟ ଦେଶରେ, ଅନେକ ଭାବରେ ମଧ୍ୟ, ସାପମାନଙ୍କ ସମ୍ବନ୍ଧରେ କେତେକ ଧାରଣା ରହି ଆସିଛି । ସେଥିରୁ କେତେଗୁଡ଼ିଏ ଉଦାହରଣ ଦେଲି, ସାପ ପ୍ରତିହିଂସା ପରାୟଣ, ବିଶେଷ କରି ଗୋଖର । ତା' ପିଲାକୁ ଜାଣତରେ ବା ଅଜାଣତରେ ମାରିଦେଲେ, ସେ ଘାତକର ପିଚ୍ଛା ନେଇ, ଆସି ଘରେ ପଶି ତା ପିଲା ବା ପରିବାରର କାହାକୁ ହେଲେ ଚୋଟ ମାରି ଚାଲିଯାଏ । ସର୍ପ ଦଂଶନରେ ମନ୍ତ୍ର ଓ ଝଡ଼ା ଫୁଙ୍କା କାମ କରେ ଓ ତାହାର ଦେହରୁ ବିଷ ଓହ୍ଲାଇଯାଏ । ଚେରମୂଳର ପ୍ରୟୋଗ ଦ୍ୱାରା ସର୍ପ ଦଂଶନରୁ ଆରୋଗ୍ୟ ମିଳେ । କେତେକ ଜାତିର ନାଗ ସାପ ଏତେ ବିଷାକ୍ତ ଯେ ସେମାନେ ଘାସ ଉପରେ ଚାଲିଗଲେ, ଘାସ ଜଳିଯାଏ । କେତେକ ସାପ ଅଛନ୍ତି, ସେମାନେ ଲାଞ୍ଜ ଅଗକୁ ପାଟିରେ ଭର୍ତ୍ତି କରି, ଗୋଲାକାର ହୋଇ ପବନ ମୁହାଁ ଗଡ଼ି

Digitized by PPRACHIN, SOA

ଗଛ ଗଛ ଚଢ଼ନ୍ତି । ଏ ସମସ୍ତ କାଳ୍ପନିକ । ଏଥିରେ କୌଣସି ସତ୍ୟତା ନାହିଁ । ଯେତେବେଳେ ମଣିଷର ପ୍ରକୃତି ଓ ଜୀବଜନ୍ତୁ ସମ୍ବନ୍ଧରେ ଜ୍ଞାନ ସାମାନ୍ୟ ଥିଲା, ସେତେବେଳେ ସେ ସବୁ ଭୟ ଉତ୍ପାଦନ କରୁଥିବା ସମସ୍ତ ବସ୍ତୁକୁ ଦେବତାର କୋପ ବୋଲି ଧାରଣା କଲା, ସେମାନଙ୍କର ସନ୍ତୋଷ ଲାଗି ନାନା ଭାବେ ପୂଜା କରୁଥିଲା । ସେଥିପାଇଁ ନାଗ ଦେବତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ନାଗ ଚତୁର୍ଥୀ ବା ନାଗଳ ଚଉଠି ଓ ନାଗ-ପଞ୍ଚମୀରେ ସର୍ପ ପୂଜା ଏବେ ମଧ୍ୟ ଅନେକ ସ୍ଥାନରେ ପାଳିତ ହୁଏ ।

## ସାପ

ସମଗ୍ର ପୃଥିବୀରେ ମୋଟ ପ୍ରାୟ ୨୫୦୦ ଭିନ୍ନ ଜାତିର, ସାନ ବଡ଼, ବିଷାକ୍ତ ବିଷହୀନ, ଭୂଗର୍ଭ ବର୍ତ୍ତିର, ସ୍ଥଳବାସୀ, ବୃକ୍ଷବାସୀ, ମଧୁର ଜଳବାସୀ ଓ ସାମୁଦ୍ରିକ ସର୍ପ ଏବାର ସନ୍ଧାନ ମିଳନ୍ତି । ପ୍ରତ୍ୟେକ ଜାତି ସାପର ପାଟି ଭିତରକୁ ବଙ୍କା ପ୍ରକାର ଛୁଞ୍ଚି ହୋଇନ୍ତି । ସେ ସବୁ ଦାନ୍ତ ଉକ୍ତ ସାପକୁ ଖାଦ୍ୟ ଗ୍ରହଣରେ ସାହାଯ୍ୟ କରେ । ସାପ ଜୀଅନ୍ତା ପ୍ରାଣୀକୁ କାମୁଡ଼ି ଧରେ, ତା ପାଟିରେ ଥିବା ଗ୍ରନ୍ଥିର ରସ ଦ୍ୱାରା ଘାଏଲ କରି ପିଚ୍ଛିଳ କରି, ଗିଳିବାକୁ ଆରମ୍ଭ କରେ । ପ୍ରତ୍ୟେକ ସାପର ଲାଳରେ କିଛି ନା' କିଛି ପଦାର୍ଥ ଥାଏ, ଯାହା ତା'ର ଖାଦ୍ୟ-ଜୀବ ପାଇଁ ବିଷାକ୍ତ । ମାତ୍ର ତାର ପରିମାଣ, ଗୋଟିଏ ଲୋକର ଜୀବନ-ହାନି କରିବା ପାଇଁ ଯଥେଷ୍ଟ ହୋଇ ନପାରେ । ଯେଉଁ ସାପ ଥରକର ଦଂଶନରେ ଏତେ ବିଷ ଉଦ୍‌ଗାରଣ କରେ ଯେ ତାହା ଜଣେ ଲୋକର ମୃତ୍ୟୁ ଘଟାଇବା ପାଇଁ ଯଥେଷ୍ଟ, ସେ ଭଳି ସାପକୁ ଆମେ 'ବିଷାକ୍ତ' ବୋଲି କହୁଥାଉଁ । ସେ ଦୃଷ୍ଟିରୁ ଦେଖିଲେ, ପୃଥିବୀର ବିଭିନ୍ନ ଅଞ୍ଚଳରେ ବାସ କରୁଥିବା ୪୦୦ ଜାତି ସାପ ବିଷାକ୍ତ । ହିମାଳୟରେ ୫୦୦୦ ମିଟର ଉଚ୍ଚତା ଯାଏ, ସ୍ୱ ବୃତ୍ତର-କ୍ଷେତ୍ର ଅକ୍ଷାଂଶ ଯାଏ, ସାପ ଦେଖାଯାଆନ୍ତି । ସମସ୍ତ ଜାତିର ସମୁଦ୍ର-ବାସୀ ସାପ ବିଷାକ୍ତ । ପ୍ରାୟ ସମସ୍ତ ମଧୁର ଜଳବାସୀ ସର୍ପ ବିଷହୀନ । ଆୟାରଲାଣ୍ଡ ଓ ମାଲାଗାସେ (ମାଡ଼ାଗାସ୍କର)ରେ ବିଷାକ୍ତ ସାପ ଦେଖାଯାଆନ୍ତି ନାହିଁ । ନ୍ୟୁଜିଲାଣ୍ଡ ଓ ସୁମେରୁ ଅଞ୍ଚଳରେ ସାପ ବାସ କରନ୍ତି ନାହିଁ । ଅଷ୍ଟ୍ରେଲିଆ ମହାଦେଶର ଉତ୍ତର-ପଶ୍ଚିମ ଦିଗରେ ଅବସ୍ଥିତ ଟିମୋର ସାଗରରେ ଅସ୍‌ମୋର ପ୍ରବାଳ ପ୍ରାଚୀର ସ୍ତରରେ ଏକ ଜାତି ସାମୁଦ୍ରିକ ସର୍ପ (ବୈଜ୍ଞାନିକ ନାମ Hydrophis belcheri) ବାସ କରନ୍ତି । ଏମାନଙ୍କର ବିଷ ସବୁଠାରୁ ଅଧିକ ତୀବ୍ର । ଅଷ୍ଟ୍ରେଲିଆର କୁଇନ୍‌ସଲାଣ୍ଡ ଅଞ୍ଚଳର ପଶ୍ଚିମାଞ୍ଚଳରେ ବାସ କରୁଥିବା ଟାଇପାନ୍, ନାମକ ସର୍ପ (ବୈଜ୍ଞାନିକ ନାମ Oxyuranus microlepidotus)

Digitized by PPRACHIN, SOA

ସ୍ଥଳବାସୀ ସାପମାନଙ୍କ ମଧ୍ୟରେ ସବୁଠାରୁ ବଡ଼ । ଏହା ଉଷ୍ଣମଣ୍ଡଳୀୟ ଜଙ୍ଗଲରେ ବାସ କରେ । ଦକ୍ଷିଣ ପୂର୍ବ ଏସିଆ, ଇଣ୍ଡୋନେସିଆ ଓ ଫିଲିପାଇନ୍ସ ଦ୍ୱୀପପୁଞ୍ଜ ପୃଥିବୀର ଦୀର୍ଘତମ ସର୍ପ 'ଜାଲିକାକୃତ ଅଜଗର' Reticulated python କହନ୍ତି, ବୈଜ୍ଞାନିକ ନାମ (pyrhon reticulatus)ର ଅନ୍ତର୍ଭୁକ୍ତ । ଭାରତର ନିକୋବର ଦ୍ୱୀପପୁଞ୍ଜରେ ମଧ୍ୟ ଏହା ଦେଖିବାକୁ ମିଳେ ।

ସାପଟି ୧୦ ମିଟର (୩୨ ଫୁଟ ୯ ଇଞ୍ଚ) ପର୍ଯ୍ୟନ୍ତ ଲମ୍ବରେ ବଢ଼ିଥାଏ । ସାପମାନଙ୍କ ମଧ୍ୟରେ 'ଥ୍ରେଡ୍ ସାପ' କ୍ଷୁଦ୍ରତମ ଓ ସବୁଠାରୁ ସାନ ଥ୍ରେଡ୍ ସାପ ୧୦୦ ମିଲିମିଟର ଲମ୍ବ । ସବୁଠାରୁ ଓଜନିଆ ସାପ ଦକ୍ଷିଣ ଆମେରିକାର ଆନାକୋଣ୍ଡା (ଜଳଚର ବୋଆସ୍, (ବୈଜ୍ଞାନିକ ନାମ Eunectes murinus) ୨୨୭ କିଲୋଗ୍ରାମ (୫୦୦ ପାଉଣ୍ଡ) ଓଜନ ହେବାର ଦେଖାଯାଇଛି । ଅଜଗର ପୃଥିବୀର ଦୀର୍ଘତମ ବଡ଼ ସର୍ପ । ଦୈର୍ଘ୍ୟରେ ଏହା ୫.୬୧ ମିଟର (୧୮ ଫୁଟ ୧ଇଞ୍ଚ) ଯାଏ ହୋଇଥାଏ ।

ଭାରତରେ ୨୧୬ଟି ବିଭିନ୍ନ ଜାତିର ସାପ ଦେଖାଯାନ୍ତି । ତନ୍ମଧ୍ୟରୁ ୫୨ ଜାତି ସାପ ବିଷାକ୍ତ । ସେଥିରୁ ୨୦ ଜାତି ସାପ ସମୁଦ୍ରବାସୀ ଓ ମୁଖ୍ୟତଃ ବଙ୍ଗୋପସାଗରରେ ବିଚରଣ କରନ୍ତି । ବାକି ୩୨ ଜାତି ସାପ ସ୍ଥଳବାସୀ । ସେମାନେ ଭୂମିରେ, ବଣରେ, ଗଛରେ ମଧ୍ୟ ବା ଜଳରେ ଅଥବା ଜଳା ଭୂମିରେ ରହନ୍ତି । ଆମ ଦେଶର ସାଧାରଣ ବିଷଧର ସର୍ପ ଗୁଡ଼ିକ ହେଲେ, ଗୋଖର (ଏକ ଚକ୍ଷୁ ଯୁକ୍ତ, ଦ୍ୱି ଚକ୍ଷୁ ଯୁକ୍ତ ଜାତି ଏବଂ ଫଣାରେ ଚିହ୍ନ ଥିବା ବା ଆଦୌ କୌଣସି ଚକ୍ଷୁ ନଥିବା ଗୋଖର), ନଣ୍ଠ, ରଣା, ଚନ୍ଦ୍ରବୋଡ଼ା ଓ ଧୂଳନାଗ (ଏକ ଜାତିର ବୋଡ଼ା) । ଧୂଳନାଗ ରାଜସ୍ଥାନର ମରୁଭୂମି ଅଞ୍ଚଳ ଓ ଗୁଜରାଟର ଶୁଷ୍କ ବାଲୁକାମୟ ଭୂମିରେ ଦେଖାଯାନ୍ତି ।

## ସର୍ପ ଦଂଶନରେ ମୃତ୍ୟୁ

ଏକ ପୁରୁଣା ହିସାବ ଅନୁସାରେ ଭାରତରେ ବର୍ଷରେ ଦୁଇ ଲକ୍ଷ ବ୍ୟକ୍ତି ସର୍ପ ଦ୍ୱାରା ଦଂଶିତ ହୁଅନ୍ତି ଓ ସେଥିରୁ ୧୫-୦୦୦ ବ୍ୟକ୍ତି ପ୍ରାଣ ହରାନ୍ତି । ଅଜ୍ଞତା ହେତୁ ଅନେକ ସଂଖ୍ୟାର ବ୍ୟକ୍ତି ଅଣବିଷାକ୍ତ ସାପ ଦଂଶନରେ ବା ବିଷାକ୍ତ ସର୍ପ ଦଂଶନରେ ଯଥେଷ୍ଟ ବିଷ ଦେହରେ ପ୍ରବେଶ କରି ନଥିଲେ ମଧ୍ୟ ଭୟରେ ହେତୁ ପ୍ରାଣ ହରାନ୍ତି । ଭୟ ହେତୁ ହୃଦୟରେ ଅତ୍ୟଧିକ ଆବେଗ ଧକ୍କା ପାଏ । ଫଳରେ ଦେହରେ ସାଧାରଣ ରକ୍ତ ସଞ୍ଚାଳନ ହୋଇଯାଏ । ସର୍ପ ବିଷର ଯାହା ପ୍ରତିକ୍ରିୟା

Digitized by PPRACHIN, SOA

ହେଉଥିବା ଡାକ୍ତର, ଜଣା ଲୋକରୁ ଦଂଶିତ ବ୍ୟକ୍ତି ଶେଷ ପହଞ୍ଚିପାରେ, ତା'ର ନାଡ଼ି ଦ୍ରୁତ ମାତ୍ର କ୍ଷୀଣ ହୁଏ, ଦେହ ଥଣ୍ଡା ହୋଇଯାଏ ଓ ଶେଷରେ ମୃତ୍ୟୁ ଘଟେ । ଯେ ଯାହା ହେଉ, ଆମ ଦେଶରେ ସଡ଼କ ଦୁର୍ଘଟଣାରେ ପ୍ରତିବର୍ଷ ଯେତେ ଲୋକ ମରନ୍ତି, ତା ତୁଳନାରେ ସର୍ପ ଦଂଶନରେ ମୃତ୍ୟୁ ସଂଖ୍ୟା କମ୍ ।

## ସର୍ପ ବିଷ

ପ୍ରତିକ୍ରିୟା ଅନୁସାରେ ସର୍ପ ବିଷକୁ ଦୁଇଟି ପର୍ଯ୍ୟାୟଭୁକ୍ତ କରାଯାଏ । ଯଥା— ସ୍ନାୟୁ ବିଷ ଓ ରକ୍ତ ବିଷ । ସ୍ନାୟୁ ବିଷ ସ୍ନାୟୁ ତନ୍ତ୍ର ଉପରେ କାର୍ଯ୍ୟ କରେ ଏବଂ ଏହିଭଳି ବିଷ ଥିବା ସାପ କାମୁଡ଼ିଲେ ସାଧାରଣତଃ ପକ୍ଷାଘାତ ବା ପାରାଲିସିସ ଦେଖାଦିଏ ଓ ଶ୍ୱାସକ୍ରିୟା ବନ୍ଦ ହୋଇଯାଏ । ରକ୍ତ ବିଷର ରକ୍ତ ଉପରେ ପ୍ରତିକ୍ରିୟା ଯୋଗୁ ରକ୍ତ ଜମାଟ ବାନ୍ଧିଯାଏ ଅଥବା ରକ୍ତସ୍ରାବ ଘଟାଏ । ଗୋଖର ଏବଂ ଚିତି ଓ ରଣା ସାପର ବିଷରେ ସ୍ନାୟୁ ବିଷ ଥାଏ । ବୋଡ଼ାମାନଙ୍କର ବିଷରେ ରକ୍ତ ବିଷ ଥାଏ । ସାମୁଦ୍ରିକ ସର୍ପମାନଙ୍କର ବିଷ ଦେହର ବିଭିନ୍ନ ତନ୍ତ୍ରକୁ ଆକ୍ରମଣ କରେ । ଯଥା—ସ୍ନାୟୁତନ୍ତ୍ର (ସ୍ନାୟୁ ବିଷ) ରକ୍ତକୋଷକୁ ଫଟାଇଦିଏ, (ରକ୍ତ ବିଷ) ଦେହର କୋଷକୁ ନଷ୍ଟ କରିଦିଏ । (proteolytic କୋଷ ବିଷ) ମାଂସପେଶୀକୁ ନଷ୍ଟ କରେ (ପେଶୀ ବିଷ) ହୃଦ୍‌ଯନ୍ତ୍ରକୁ ଆକ୍ରମଣ କରେ (ହୃଦ୍‌ବିଷ) ଓ ବୃକ୍କକୁ ଆକ୍ରମଣ କରି ଅକାମୀ କରେ (ବୃକ୍କ ବିଷ) । ଅମ୍ଭମାନଙ୍କର ସୌଭାଗ୍ୟ ସମୁଦ୍ରବାସୀ ସାପ ସାଧାରଣତଃ କେହିଙ୍କୁ କାମୁଡ଼ନ୍ତି ନାହିଁ । କାରଣ ସମୁଦ୍ରବାସୀ ସାପଙ୍କ ବିଷଦାନ୍ତ ପାଟିର ଟିକେ ଭିତରକୁ ରହିଥିବାରୁ, ଦଂଶନ କଲାବେଳେ ସେମାନଙ୍କୁ ବହୁତ ବେଶୀ ପାଟି ମେଲା କରିବାକୁ ପଡ଼ିଥାଏ । ତଦ୍ୱାରା ସେମାନେ କଷ୍ଟ ଅନୁଭବ କରିଥାନ୍ତି । ମାତ୍ର ଏଥିରେ କିଛି ବ୍ୟତିକ୍ରମ ଅଛି । ଆଣ୍ଡାମାନ ଦ୍ୱୀପପୁଞ୍ଜକୁ ଘେରି ରହିଥିବା ସାଗରରେ ପ୍ରଚୁର ହିଂସ୍ର ସର୍ପ ବାସ କରନ୍ତି ଏବଂ ସେମାନେ ଜଳରେ ସନ୍ତରଣ କରୁଥିବା ବ୍ୟକ୍ତିଙ୍କୁ ଗୋଡ଼ାଇ ଗୋଡ଼ାଇ କାମୁଡ଼ିବାର ଦୃଷ୍ଟାନ୍ତ ଅଛି । ସେଥିପାଇଁ ବ୍ରିଟିଶ ଶାସନ କାଳରେ, ଆଣ୍ଡାମାନ ଦ୍ୱୀପରେ ନିର୍ବାସିତ ବନ୍ଦୀ, ଜେଲରୁ ଖସି, ସମୁଦ୍ରରେ ପହଁରି ଦେଶକୁ ପଳାଇ ଆସିବାର ସମ୍ଭାବନା କମ୍ ଥିଲା । ଅଜଗର ସର୍ପ ଭୟଙ୍କର ହେଲେ ମଧ୍ୟ ଏହା ଏକ ବିଷଧର ସର୍ପ ନୁହେଁ । ଏହି ସାପ ପଶ୍ଚିମ ଘାଟ, ଓଡ଼ିଶା, ପଶ୍ଚିମବଙ୍ଗ (ସୁନ୍ଦରବନ) ଆସାମ ଓ ଆଣ୍ଡାମାନ ଦ୍ୱୀପପୁଞ୍ଜର ସୀମିତ ଅଞ୍ଚଳରେ ଦେଖାଯାଏ । ଓଡ଼ିଶାର ଭିତର କନିକା ଜାତୀୟ ଉଦ୍ୟାନରେ ଅଜଗର (ଅନ୍ୟ ନାମ ଝଟିଚିତ୍ର, ମଣିଚିତ୍ର) ବାସ କରନ୍ତି ଓ 'ହାତୀ କାନ୍ଧୁଆ' ନାମରେ ପରିଚିତ । ବାହ୍ମଣ ବୋଡ଼ା ସାପ (ବାହ୍ମଣ ନାଗ)

Digitized by PPRACHIN, SOA

ବୃକ୍ଷବାସୀ ଓ ଭାରତୀୟ ଉପଦ୍ୱୀପର ଅନେକ ସ୍ଥାନରେ ବୈଷ୍ଣବ ନାମ (Trimeresurus gramineus) ଏକ ସାଧାରଣ ସାପ ରୂପେ ଦେଖାଯାଉଥିଲେ ମଧ୍ୟ (ବା'ଙ୍ଗୁର ଅଞ୍ଚଳରେ ସାଧାରଣ) ଏମାନଙ୍କ ଦଂଶ ବିଷାକ୍ତ ହୋଇ ଗଣାଯାଏ ନାହିଁ । ଏହା ଏକ ଛୋଟ ବୋ'ଡ଼ା । ଗୋଟିଏ ୬୦-୭୫ ସେଣ୍ଟିମିଟର ଲମ୍ବର ସାପ ଅଭକର ଦଂଶନରେ ପ୍ରାୟ ୧୪ ମିଲିଗ୍ରାମ ପରିମାଣ ବିଷ କ୍ଷତ ମଧ୍ୟକୁ ପ୍ରବେଶ କରିପାରେ । ଜଣେ ୭୦ କିଲୋଗ୍ରାମ ଓଜନର ସୁସ୍ଥ ବ୍ୟକ୍ତିର ଜୀବନ ନେବାକୁ ବିଷର ପରିମାଣ ୧୦୦ ମିଲିଗ୍ରାମ ହେବା ଆବଶ୍ୟକ । ଏ ଜାତୀୟ ସାପର ଚକ୍ଷୁ ଓ ନାକପୁଡ଼ା ମଧ୍ୟରେ ଏକ ଗର୍ତ୍ତ ଥାଏ । ଏମାନେ 'ଗର୍ତ୍ତମୁଖ ବୋଡ଼ା' (pit viper) ଶ୍ରେଣୀ ଅନ୍ତର୍ଭୁକ୍ତ ।

'ଡ଼ାହୁଅ ନାଗ' ସାପ ହଂସ୍ର ଓ ମୁଣ୍ଡ ଉତ୍ତୋଳନ କରି ପାରିଲେ ମଧ୍ୟ (କେତେକ ପରିମାଣରେ ଗୋଖର ପରି), ଏହାର ଫଣା ନାହିଁ ଓ ବିଷହୀନ । ନାହୁଡ଼ଙ୍କିଆ ସାପଠାରେ ଥିବା ବିଷର ପରିମାଣ ସାମାନ୍ୟ ଏବଂ ତାର ଦଂଶନରେ ଉଦ୍‌ଗାରିତ ବିଷ ଗୋଟିଏ ଲୋକକୁ ମୃତ୍ୟୁ ପଥର ଯାତ୍ରୀ କରିବା ପାଇଁ ଯଥେଷ୍ଟ ନୁହେଁ ।

## ସର୍ପ ବିଷହାରକ

ବମ୍ବେର ହଫକିନ୍ ବାୟୋ-ଫାର୍ମାସିଉଟିକାଲ କର୍ପୋରେସନ ଏବଂ ହିମାଚଳ ପ୍ରଦେଶର କସୌଲିଠାରେ ଅବସ୍ଥିତ କେନ୍ଦ୍ରୀୟ ଗବେଷଣା ପ୍ରତିଷ୍ଠାନରେ ସର୍ପ-ବିଷ ହାରକ ଔଷଧ ପ୍ରସ୍ତୁତ ହୁଏ । ଏହା ଚୂର୍ଣ୍ଣ ଆକାରରେ ଶିଶିରେ ମିଳେ । ଏହି ଔଷଧ ଗୋଖର (ଡମ୍ପ ଅଡ) ଚିତି, ଚନ୍ଦ୍ରବୋଡ଼ା ଓ ଧୂଳନାଗ (ଏକ ଜାତି ବୋଡ଼ା)ର ବିଷକୁ ନାଶ କରେ । ଉଣା ଓ ଅଧିକ ଦଂଶନରେ ମଧ୍ୟ ଏହି ଔଷଧ ପ୍ରୟୋଗ କରାଯାଇଥାଏ ।

ଔଷଧକୁ ରେଫ୍ରିଜେରେଟରରେ ରଖାଯାଏ । ମାତ୍ର ଯେଉଁଠାରେ ଏହା ସମ୍ଭବ ନୁହେଁ, ସେଠାରେ ଘରର ଏକ ଥଣ୍ଡା ଅନ୍ଧାରୁଆ ସ୍ଥାନରେ ରଖିଲେ ତା'ର ଗୁଣ ପାଞ୍ଚ ବର୍ଷ ଯାଏ ନଷ୍ଟ ହୁଏ ନାହିଁ । ସମସ୍ତ ସାଧାରଣ ସ୍ୱାସ୍ଥ୍ୟ କେନ୍ଦ୍ରରେ ଏହା ଚଳିତ ହୋଇ ରହିଥାଏ । ଏହି ଔଷଧ କେବଳ ଅଭିଜ୍ଞ ଡାକ୍ତର ପ୍ରୟୋଗ କରିବା ବିଧେୟ । ପ୍ରଥମ କାରଣ ହେଲା—କୌଣସି ବ୍ୟକ୍ତିକୁ ମାତ୍ର ଗୋଟିଏ ବିଷଭୃ (ବିଷଧର) ସର୍ପ ଦଂଶନ କରିଥାଏ । ଔଷଧରେ ବିଭିନ୍ନ ସାପର ବିଷକୁ ନାଶ କରିବା ପାଇଁ ଦ୍ରବ୍ୟ ଥିବାରୁ, ତାହାର ପ୍ରୟୋଗ ପରେ ରୋଗୀଠାରେ ସେହି

Digitized by PPRACHIN, SOA

କେତେକ ପ୍ରତିକ୍ରିୟା ଦେଖାଦିଏ ତାକୁ ଚିକିତ୍ସା କରିବାପାଇଁ ଉପଯୁକ୍ତ ଦକ୍ଷତା ଥିବା ଚିକିତ୍ସକ ଆବଶ୍ୟକ ।

ଦ୍ୱିତୀୟ କାରଣ ହେଉଛି—ଗୁଡ଼ିଏ ବିଷାକ୍ତ ସର୍ପଙ୍କ ଗରଳ ଅଳ୍ପ ଅଳ୍ପ ପରିମାଣରେ ଘୋଡ଼ା ଦେହରେ ପ୍ରବେଶ କରାଇ, ତା'ର ରକ୍ତରୁ ସର୍ପ ବିଷ ହାରକ ଔଷଧ ପ୍ରସ୍ତୁତ ହୁଏ । ଯେଉଁ ବ୍ୟକ୍ତିର ଘୋଡ଼ା ସିରମ ପ୍ରତି ଏଲର୍ଜି ଅଛି, ତା' ପାଇଁ ଚିକିତ୍ସା ପଦ୍ଧତି ଭିନ୍ନ । ସେଥିପାଇଁ ସର୍ପ ଦ୍ୱାରା ଦଂଶିତ ବ୍ୟକ୍ତିକୁ ପ୍ରଥମେ ଡାକ୍ତର ଏକ ପରୀକ୍ଷା ଦ୍ୱାରା ନିର୍ଣ୍ଣୟ କରନ୍ତି, ରୋଗୀର ଘୋଡ଼ା ସିରମ ପ୍ରତି ଏଲର୍ଜି ଅଛି କି ନାହିଁ ।

ତୃତୀୟ କାରଣ ହେଉଛି—ବିଷ ଦ୍ରୁତ ଗତିରେ ଦେହରେ ଚଢ଼ୁଥିବାରୁ ତୁରନ୍ତ କାର୍ଯ୍ୟକାରୀ କରିବା ପାଇଁ ସର୍ପ ବିଷହାରକ ଔଷଧକୁ ତରଳ ଡିଷ୍ଟିଲଡ୍ ଜଳରେ ଦ୍ରବୀଭୂତ କରି ୫% ଗ୍ଲୁକୋଜସାଲାଇନ୍ ସହିତ ମିଶାଇ ଶିରାରେ ଇନ୍‌ଜେକ୍‌ସନ ଦିଆଯାଏ । ଏ ପ୍ରକାର ଇନ୍‌ଜେକ୍‌ସନ କେବଳ ଡାକ୍ତର ଦେବା ବିଧେୟ । ଭାରତରେ କୌଣସି ଚେରମୂଳ ଆବିଷ୍କୃତ ହୋଇନାହିଁ ଯାହାର ସର୍ପ ବିଷହାରକ ଗୁଣ ଅଛି ।

## ସର୍ପ ଦଂଶନର ଲକ୍ଷଣ

ବିଭିନ୍ନ ବିଷାକ୍ତ ଓ ବିଷହୀନ ସର୍ପ ଦଂଶନରେ କି ପ୍ରକାର ପ୍ରତିକ୍ରିୟା ଦଂଶିତ ବ୍ୟକ୍ତିଠାରେ ଦେଖାଦିଏ ସିନେ, ତାହା ଟେବୁଲ ନଂ ୧ରେ ଦିଆଯାଇଅଛି । ସାଧାରଣ ବିଷାକ୍ତ ସର୍ପ, ତା'ର ଲମ୍ବ, ଅଉଡର ଦଂଶନରେ ଛଡ଼ରେ କେତେ ପରିମାଣରେ ବିଷ ପ୍ରବେଶ କରେ ଓ ଜଣେ ମୃତ ବ୍ୟକ୍ତିର ମୃତ୍ୟୁ ଘଟାଇବା ପାଇଁ କେତେ ପରିମାଣରେ ବିଷ ଆବଶ୍ୟକ, ସେ ସମ୍ପର୍କରେ ବିବରଣୀ ଟେବୁଲ ନଂ ୨ରେ ଦିଆଯାଇଅଛି । ବିଷାକ୍ତ ସର୍ପ ଦ୍ୱାରା ଦଂଶିତ ବ୍ୟକ୍ତି ୧୦ ମିନିଟ୍‌ରୁ ୪୮ ଘଣ୍ଟା ମଧ୍ୟରେ ପ୍ରାଣତ୍ୟାଗ କରିବାର ଦେଖାଯାଇଅଛି । ଅବଶ୍ୟ ଚଞ୍ଚଳ ପଶିଯିବା ଲୋକେ, ସର୍ପ ଦଂଶନ କରିବା ମାତ୍ରେ, ଶକ ଲାଗନ୍ତ ଅବା ଉତ୍ତେଜନା ହେତୁ, ତତ୍‌କ୍ଷଣାତ୍ ରୋଗୀର ମୃତ୍ୟୁ ଘଟିପାରେ । କେବେ ଜଣେ ସାଧାରଣ ସ୍ୱାସ୍ଥ୍ୟବାନ୍ ବ୍ୟକ୍ତି ଦଂଶିତ ହେଲେ, ଦଂଶନର ୨୦ ମିନିଟ୍ ମଧ୍ୟରେ ମୃତ୍ୟୁ ଘଟିବା କଥା ନୁହେଁ । ତେଣୁ ରୋଗୀ ସଙ୍କଟାପନ୍ନ ହୋଇଗଲେ ମଧ୍ୟ, ମୃତ୍ୟୁ ହୋଇସାରିଛି ବୋଲି ମନେହେଲେ ମଧ୍ୟ ଚିକିତ୍ସା ପାଇଁ ଡାକ୍ତରଙ୍କୁ ଡାକିବା ବା ଡାକ୍ତରଙ୍କ ପାଖକୁ ଅବିଳମ୍ବେ ନେଇଯିବା ଏକାନ୍ତ ଆବଶ୍ୟକ ।

ଅନ୍ୟ ଏକ ବିବରଣୀରୁ ଜଣାପଡ଼େ, ଏସିଆ ଓ ଅଫ୍ରିକାରେ ଗୋଖର ଦଂଶନ ଯୋଗୁ ବାର୍ଷିକ ପ୍ରାୟ ୧୦,୦୦୦ ବ୍ୟକ୍ତି ପ୍ରାଣ ହରାନ୍ତି । ଗୋଖର ଦଂଶନରେ ପ୍ରାୟ

Digitized by PPRACHIN, SOA

୫୦ ଭାଗ ମରନ୍ତି ନାହିଁ । କାରଣ—ଗୋଖରର ବିଷଦାନ୍ତର ସାମନାପଟ ମେଳ ଥିବାରୁ ସମସ୍ତ ବିଷ ମନୁଷ୍ୟ ଶରୀରରେ ପ୍ରବେଶ ନକରି ତା'ର ଲୁଗାପଟା ବା ମୋଜାରେ ଶୋଷି ହୋଇଯାଏ । ଦଂଶନ କରିବା ପୂର୍ବେ ସାପ ଯଦି ଆହାର କରିଥାଏ, ତେବେ ତା'ର କିଛି ବିଷ ବ୍ୟୟିତ ହୋଇଯାଇଥିବାରୁ ଆଘାତ ପାଇ ମନୁଷ୍ୟକୁ କାମୁଡ଼ିଲେ ମଧ୍ୟ ଅନେକ କ୍ଷେତ୍ରରେ ମୃତ୍ୟୁ ଘଟାଇବାକୁ ତା' ବିଷଥଳୀରେ ଯଥେଷ୍ଟ ବିଷ ନଥାଏ ।

## ସର୍ପ ଦଂଶନରେ ପ୍ରାଥମିକ ଚିକିତ୍ସା

୧ । କୌଣସି ବ୍ୟକ୍ତି ସର୍ପ ଦ୍ୱାରା ଦଂଶିତ ହେଲେ, ସଙ୍ଗେ ସଙ୍ଗେ ଡାକ୍ତରଙ୍କ ନିକଟକୁ ଖବର ଦିଅ ଅଥବା ରୋଗୀକୁ ଡାକ୍ତରଙ୍କ ପାଖକୁ ବୋହି ନେଇଯାଅ । ରୋଗୀକୁ ଦମ୍ଭ ଦିଅ ଯେ ସେ ଭଲ ହୋଇଯିବ । ଡାକ୍ତରଙ୍କୁ ଖବର ପଠା ହୋଇଛି ବୋଲି କୁହ । ତଦ୍ଦ୍ୱାରା ରୋଗୀଠାରେ ଛନଭାରୁ ସୃଷ୍ଟ ଜନିତ ପ୍ରତିକ୍ରିୟା ଉଣା ହେବ ।

୨ । ରୋଗୀକୁ ଚଳାଅ ନାହିଁ । ତାକୁ ଶୋଇବାକୁ ଦିଅ । ମୁଣ୍ଡ ଟିକିଏ ତଳକୁ ଓ ଗୋଡ଼ ଟିକିଏ ଉପରକୁ ରହିବା ଉଚିତ ।

୩ । ଦଂଶିତ ସ୍ଥାନର ଉପରକୁ ଗୋଟିଏ ରୁମାଲ ବା ପଟି ଦ୍ୱାରା ବାନ୍ଧି ଦିଅ । ଏହି ପଟି ଉପରକୁ ଆଉ ଗୋଟିଏ ପଟି ବାନ୍ଧ । ଏହି ପଟି ଦୁଇଟି ଏପରି ଭାବେ ବନ୍ଧା ହେବ ଯେପରିକି ତା' ତଳେ ଗୋଟିଏ ଆଙ୍ଗୁଠି ବା ପେନ୍ସିଲ ଢୁକି ଯାଇ ପାରିବ । ଅର୍ଥାତ୍ ଖୁବ୍ ଜୋରରେ ଏହି ପଟି ବାନ୍ଧ ନାହିଁ ।

୪ । ରୋଗୀ ଯଦି ଶୋଇବାକୁ ଚାହେଁ, ତାକୁ ଶୋଇବାକୁ ଦିଅ । ତାକୁ ଉଠାଇ ରଖିବାକୁ ଚେଷ୍ଟା କରନାହିଁ । ଉଷୁମ ପାଇଁ ତାକୁ ଘୋଡ଼ାଇ ଦିଅ । ଗରମ ପାଣି ବ୍ୟାଗ୍ ବା ବୋତଲ ବ୍ୟବହାର କରନାହିଁ । ଆବଶ୍ୟକ ସ୍ଥଳେ, ରୋଗୀକୁ କମ୍ବଳ ଘୋଡ଼ାଇ ଦେଲେ କ୍ଷତି ନାହିଁ । ଯଦି ରୋଗୀ ଚାହୁଁଛି, ତେବେ ତାକୁ ଚିନି ପଡ଼ା ଚା' ବା କଫି ଦିଆଯାଇପାରେ ।

୫ । ରୋଗୀର କ୍ଷତକୁ ସାଧାରଣ ଜଳରେ ଧୋଇଦିଅ । କ୍ଷତ ସ୍ଥାନକୁ କଟାଅ ନାହିଁ, କ୍ଷତ ସ୍ଥାନରୁ ବଦରକ୍ତ ବାହାର କରିବାକୁ ମୁହଁ ଲଗାଇ ଚୁଷ ନାହିଁ ।

## ସର୍ପ ଦଂଶନରୁ ରକ୍ଷା ପାଇବା ପାଇଁ ପ୍ରତିଷେଧ ବ୍ୟବସ୍ଥା

ଯଦି ଗୋଟିଏ ସାପ ହାବୁଡ଼ରେ ପଡ଼ିଗଲ, ଆଉ ପଳାଇ ଯିବାର ବାଟ ନାହିଁ, ସେ ନିଶ୍ଚେ ଆସି କାମୁଡ଼ି ଦେବ ବୋଲି ଆଶଙ୍କା କରୁଛ, ତେବେ ହାତ

Digitized by PPRACHIN, SOA

ପାହାନ୍ତରେ ଖାଦ୍ୟ ପାଇବ, ଯଥା—ଗାମୁଛାଟାଏ, ଘରର ଘାସ ବ୍ୟାଗ୍ ତା' ଉପରକୁ ଫୋପାଡ଼ । ସାପ ଘୋଡ଼ାଇରେ ପଡ଼ିଯିବା ଭିତରେ ଖସି ପଳାଅ ।

ସାପ କମ୍ପାଙ୍କ ପ୍ରାଣୀଟିଏ । ତଦନୁସାରେ ତା'ର ଫୁସଫୁସ ଲମ୍ବା ଓ ଦେହର ୨।୩ ଅଂଶ ସ୍ଥାନରେ ବିସ୍ତୃତ । ଅଜଗର ପରି ବଳବାନ୍ ସାପଟିଏ ଦେହରେ ଗୁଡ଼ାଇ ହୋଇଗଲେ, ଜୀବନ ବଞ୍ଚାଇବା ପାଇଁ କୌଣସି ଏକ ବାଡ଼ି ଅସ୍ତ୍ର ଦ୍ୱାରା ତା' ଦେହର ଏକାଧିକ ସ୍ଥାନରେ ଜୋରରେ ମାଡ଼ ଦେଇ ଦିଅ । ଫୁସଫୁସ ଆଘାତ ପ୍ରାପ୍ତ ହେଲେ ତା'ର କୁଣ୍ଡଳୀ ଢିଲା ହୋଇଯିବ ।

ଯେଉଁ ସ୍ଥାନରେ ସର୍ପ ଦଂଶନର ପ୍ରାଦୁର୍ଭାବ ଅଧିକ ସେଠାରେ ତଳେ ଭୂମି ଉପରେ ନଶୋଇ ଖଟ ବା ଖଟିଆ ଉପରେ ଶୋଇଲେ ଭଲ । ସାପ ମୂଷା ଖାଇବା ପାଇଁ ଘରେ ପଶେ । ଉଷ୍ମ ପାଇଁ ତଳେ ଶୋଇଥିବା ଲୋକର ବିଛଣା ତଳେ ପଶି ରହେ । ଏବେ ଭିତରେ ଲୋକ ଗଡ଼ ନେଉଟାଇଲେ ସାପ ଆଘାତ ପାଇ କାମୁଡ଼େ ।

## ସାପମାନଙ୍କର ଅର୍ଥନୈତିକ ଭୂମିକା

ସାପ କୃଷକମାନଙ୍କର ଏକ ପରମ ବନ୍ଧୁ । ଭାରତରେ ମୂଷାଙ୍କ ସଂଖ୍ୟା ୮୦୦ କୋଟି ବୋଲି ହିସାବ କରାଯାଇଅଛି । ଆମ ଦେଶରେ ବର୍ଷକୁ ପ୍ରାୟ ୩.୩ କୋଟି ଟନ୍ ଚାଉଳ ଆଦି ଶସ୍ୟ ଗୋଦାମରେ ସାଇତା ହୋଇଥିଲା ବେଳେ ମୂଷା ଖାଇ ନଷ୍ଟ କରିଦିଅନ୍ତି । ପଶ୍ଚିମ ରାଜସ୍ଥାନରେ ପ୍ରତି ହେକ୍ଟାର ଜମିରେ ପ୍ରାୟ ୨୫ଟି ବିଭିନ୍ନ ଜାତିର ୮୦୦ ମୂଷା ବାସ କରନ୍ତି ଓ ଶସ୍ୟ ନଷ୍ଟ କରନ୍ତି । ବମ୍ବେ ମହାନଗରରେ ଯେତେ ମୂଷା ଅଛନ୍ତି, ତାଙ୍କୁ ଯଦି ମାରି ଦିଆଯାଇ ପାରେ, ତେବେ ସେତେ ଶସ୍ୟ ବଞ୍ଚିବ ସେଥିରେ ନଅ ଲକ୍ଷ ଲୋକଙ୍କୁ ବର୍ଷକ ଯାଏ ଖାଦ୍ୟ ଯୋଗାଇ ଦିଆଯାଇ ପାରିବ । ସାପଙ୍କ ମୁଖ୍ୟ ଖାଦ୍ୟ ମୂଷା, ଶ୍ରେଷ୍ଠ ସାପଙ୍କ ଖାଦ୍ୟ ସରୀସୃପଙ୍କ । ଏଣୁ ସାପ ଆମର ଏକ ଅତି ଉପକାରୀ ପ୍ରାଣୀ । ସାପଙ୍କ ଭିତରୁ ଶତକଡ଼ା ୧୨ ବିଷଧର ମାତ୍ର ୩% ବିଷାକ୍ତ । ସେଥିପାଇଁ ସାପଙ୍କୁ ସର୍ବତ୍ରରେ ହତ୍ୟା କରିବା ଅନୁଚିତ ।

ସାପ ଗରଳର ଔଷଧ ଗୁଣ ଅଛି । ଦାନ୍ତରୁ ରକ୍ତସ୍ରାବ ବନ୍ଦ ନ ହେଲେ ଆଘାତଜ ରକ୍ତ ବାହାରୁଥିବା ସ୍ଥାନରେ ଚନ୍ଦ୍ରବୋଡ଼ା ସାପର ବିଷ ଲଗାଇଲେ ରକ୍ତସ୍ରାବ ବନ୍ଦ କରନ୍ତି । ଅନେକ ପ୍ରକାର ବିଷମ ବ୍ୟାଧିରେ ଯଥା ସ୍ନାୟୁଗତ କୁଷ୍ଠ ବ୍ୟାଧି, ବାତଜ ପାରାଲିସିସ୍ ଓ କେତେକ ଜାତିର କ୍ୟାନସର ରୋଗ ଅବସ୍ଥାରେ ଗୋଖର ବିଷ ପ୍ରୟୋଗ କରାଯାଏ । 'ହିମୋଫିଲିଆ' ବ୍ୟାଧିରେ ଚନ୍ଦ୍ରବୋଡ଼ାର ବିଷ ବ୍ୟବହୃତ

Digitized by PPRACHIN, SOA

ହୁଏ । ଆମ ଦେଶରେ ସର୍ପ ବିଷଦ୍ୱାରା ଔଷଧ ପ୍ରସ୍ତୁତ ଓ ଗବେଷଣା କାର୍ଯ୍ୟ ଲାଗି ବାର୍ଷିକ ପ୍ରାୟ ୫୨ ଗ୍ରାମ ସର୍ପ ବିଷ ଆବଶ୍ୟକ ହୋଇଥାଏ । ଭାରତରେ କୋବ୍ରା ବିଷର ଗ୍ରାମ ପିଛା ମୂଲ୍ୟ ପ୍ରାୟ ୨୦୦ ଟଙ୍କା ଓ ଚନ୍ଦ ଏବଂ ଧନ୍ଦ ନାଗ ସାପ ବିଷ ଏକ ଗ୍ରାମ୍‌ର ଦାମ୍ ପ୍ରାୟ ୧୦୦୦ ଟଙ୍କା ।

କେନ୍ଦ୍ର ସରକାରଙ୍କ ବନ୍ୟ ପ୍ରାଣୀ ସଂରକ୍ଷଣ ଆଇନ୍ ୧୯୭୨ ଓ ଓଡ଼ିଶା ସରକାରଙ୍କର ୧୯୭୪ ସାଲରେ ପ୍ରଣୀତ ଅନୁରୂପ ଆଇନ୍ ଅନୁସାରେ, ତିନୋଟି ସାପଙ୍କର କୌଣସି କ୍ଷତି କରିବା ଦଣ୍ଡନୀୟ । କାରଣ, ପରିବେଶ ଓ ଚାଷର ବନ୍ଧୁ ଯୋଗେ ମୂଷିକଜାତ ଜନ୍ତୁଙ୍କ ସଂଖ୍ୟା ହ୍ରାସ ପାଉଛି । ଅନ୍ୟ ଜାତି ସାପଟି ଅତ୍ୟନ୍ତ ବିରଳ । ଏହି ସାପ ଗୁଡ଼ିକ ହେଲେ—

୧ । ଅଜଗର—ବିସ୍ତୃତି—ଭାରତ, ବଙ୍ଗଳାଦେଶ, ପାକିସ୍ଥାନ ଓ ଶ୍ରୀଲଙ୍କା ।

୨ । ଜାଲି ନାଲି ଅଜଗର—ବିସ୍ତୃତି-ଉତ୍ତର-ପୂର୍ବ ଭାରତରୁ ବର୍ମା ହୋଇ ଦକ୍ଷିଣ-ପୂର୍ବ ଏସିଆ ନିକୋବର ଦ୍ୱୀପପୁଞ୍ଜ ।

୩ । ଭାରତର ଅଣ୍ଡାଖିଆ ସାପ—ବିସ୍ତୃତି—ଉତ୍ତର ପୂର୍ବ ଭାରତ, ବାଙ୍ଗଲା-ଦେଶର ଉତ୍ତରାଞ୍ଚଳ, ଦକ୍ଷିଣ-ପୂର୍ବ ନେପାଳ, କରବେଟ, ଜାତୀୟ ଉଦ୍ୟାନ (ଉତ୍ତର ପ୍ରଦେଶ)

Digitized by PPRACHIN, SOA

## ଟେବୁଲ ନଂ—୧  ବିଭିନ୍ନ ସାପ କାମୁଡ଼ାର ଲକ୍ଷଣ

| | ଗୋଖର (ବିଷ ସ୍ନାୟୁତନ୍ତ୍ର ଉପରେ କାର୍ଯ୍ୟ କରେ ) | ରଣା ଓ ଚିତି (ବିଷ ସ୍ନାୟୁତନ୍ତ୍ର ଉପରେ କାର୍ଯ୍ୟକରେ) | ଚନ୍ଦ୍ରବୋଡ଼ା ଓ ବୋଡ଼ା (ବିଷ ରକ୍ତ ସଂବହନତନ୍ତ୍ର ଉପରେ କାର୍ଯ୍ୟ କରେ) | ସାମୁଦ୍ରିକ ସାପ (ବିଷ କେନ୍ଦ୍ରସ୍ଥ ସ୍ନାୟୁତନ୍ତ୍ର, ଶ୍ୱାସତନ୍ତ୍ର ଓ ପେଶୀ-ତନ୍ତ୍ର ଉପରେ କାର୍ଯ୍ୟକରେ) | ବିଷହୀନ ସର୍ପ (ଛନକାହେତୁ ରକ୍ତ ସଂବହନତନ୍ତ୍ର ଅକାମୀ ହୋଇଯାଇ ପାରେ ।) |
|---|---|---|---|---|---|
| ୧ । | ଭୟ ଓ ଛନକା | ଭୟ ଓ ଛନକା | ଭୟ ଓ ଛନକା | ଭୟ ଓ ଛନକା | ଭୟ ଓ ଛନକା |
| ୨ । | ବାନ୍ତି | ବାନ୍ତି | ବାନ୍ତି ଓ ରକ୍ତମିଶା ଛେପ | ବାନ୍ତି | ବାନ୍ତି |
| ୩ । | ଦଂଶିତ ସ୍ଥାନରେ ଯନ୍ତ୍ରଣା | ଦଂଶିତ ସ୍ଥାନରେ କମ ଯନ୍ତ୍ରଣା ହୁଏ । | ଦଂଶିତ ସ୍ଥାନରେ ଭୀଷଣ ଯନ୍ତ୍ରଣା | ଦଂଶିତ ସ୍ଥାନରେ ଯନ୍ତ୍ରଣା ନାହିଁ । | ଦଂଶିତ ସ୍ଥାନରେ ଯନ୍ତ୍ରଣା ନାହିଁ । |
| ୪ । | ଦଂଶିତ ସ୍ଥାନରେ ବା ଆଦୌ ଫୁଲି ନଥାଏ । ଦଂଶିତ ସ୍ଥାନ ବିବର୍ଣ୍ଣ ହୁଏ ନାହିଁ । | ସାମାନ୍ୟ ଦଂଶିତ ସ୍ଥାନ ଫୁଲେ ନାହିଁ ଓ ବିବର୍ଣ୍ଣ ହୁଏ ନାହିଁ । | ଦଂଶିତ ସ୍ଥାନ ବେଶି ଫୁଲିଯାଏ ଓ ସେଠାରୁ ରକ୍ତସ୍ରାବ ହୁଏ । | ଦଂଶିତ ସ୍ଥାନ ଫୁଲେ ନାହିଁ । | ଦଂଶିତ ସ୍ଥାନ ପରିଷ୍କାର । |

Digitized by PPRACHIN, SOA

| | | | | |
|---|---|---|---|---|
| ୫ । ଅଙ୍ଗସ୍ପନ୍ଦନ ଭଳେ କଷ୍ଟ ଅନୁଭବ ହୁଏ । ପେଶୀ ସଙ୍କୁଚିତ ହୁଏ । | ଅଙ୍ଗସ୍ପନ୍ଦନ ଜରେ କଷ୍ଟ ହୁଏ, ପେଶୀ ସଙ୍କୁଚିତ ହୁଏ, ଗଭୃ ମୂର୍ଚ୍ଛାବସ୍ଥା, ଅକ୍ଷିପଟଳ ମୂଦ ହୋଇଯାଏ, ଉଦରରେ ପ୍ରବଳ ଯନ୍ତ୍ରଣା (ଶିଳ ଯାଏ) | ଉଦରରେ ଅସହ୍ୟ ଯନ୍ତ୍ରଣା, ଅଳ୍ପ ମାତ୍ରାରେ ରକ୍ତମିଶା ମୂତ୍ର, ଜୋରରେ ଚାପିବାକୁ ଚାହିଁଲେ ଛେପରେ ରକ୍ତ ପଡ଼େ (ଦୋଚା ଦଂଶନରେ ଦର୍ଶିତ ଲକ୍ଷଣ) | ପେଶୀ ବନ୍ଧା, ଜଲ, ଗଣ୍ଡି, ବେଦ ଓ ଅଙ୍ଗ ଶକ୍ତ ହୋଇଯାଏ ଏବଂ ସଞ୍ଚାଳନରେ କଷ୍ଟ ହୁଏ । | ଏପରି ଲକ୍ଷଣ ନାହିଁ । |
| ୬ । ଶ୍ୱାସକ୍ରିୟା ବନ୍ଧ ହୋଇଯାଏ । ୮-୧୨ ଘଣ୍ଟା ବା କମ ସମୟ ମଧ୍ୟରେ ମୃତ୍ୟୁ ହୁଏ । | ଶ୍ୱାସକ୍ରିୟା ବନ୍ଦ ହୋଇଯାଏ । ୪-୬ ଘଣ୍ଟା ବା କମ୍ ସମୟ ମଧ୍ୟରେ ମୃତ୍ୟୁ । | ଦେହ ଭିତରେ ରକ୍ତସ୍ରାବ ହେତୁ ୨୦-୬୦ ଘଣ୍ଟା ଭିତରେ ବା ତା'ଠାରୁ ଅଧିକ ସମୟ ପରେ ମୃତ୍ୟୁ । | ବକ୍ଷ ସ୍ନାୟୁ-ପେଶୀ ଅବରୋଧ ହେତୁ ଶ୍ୱାସ ନେଇ ପାରନ୍ତିନି । ୨୪-୨୮ ଘଣ୍ଟା ଭିତରେ ବା ପରେ ମୃତ୍ୟୁ । | ହଠାତ୍ ଯୋଗେ ଦଂଶନ ହେଲେ ୨ ମୃତ୍ୟୁ ଘଟିପାରେ । |

(କ୍ରମଶଃ)

Digitized by PPRACHIN, SOA

ଟେବୁଲ ନଂ—୨

## ସାଧାରଣ ବିଷଧର ସାପମାନଙ୍କର ହାରାହାରି ଲମ୍ବ ଓ ବିଷର ତୀବ୍ରତା

| ସାପ | ଲମ୍ବ (ସେଣ୍ଟିମିଟର) | ପୁରୁଷ ଦେହ ଓଜନର ଜଣେ ସୁସ୍ଥ ବ୍ୟକ୍ତିର ମୃତ୍ୟୁ ଘଟାଇବା ପାଇଁ କେତେ ମିଲିଗ୍ରାମ ବିଷ ଆବଶ୍ୟକ | ସାପର ଦଂଶନରେ କେତେ ମିଲିଗ୍ରାମ ବିଷ କ୍ଷତ ଦେଇ ଶରୀରରେ ପ୍ରବେଶ କରେ । |
|---|---|---|---|
| ୧) ଗୋଖର | ୧୫୦-୧୮୦ | ୧୨-୧୫ | ୧୭୫-୨୦୦ |
| ୨) ଚିତ, ରଣା | ୭୦-୯୦ | ୧-୨ | ୫-୧୦ |
| ୩) ଚନ୍ଦ୍ର ବୋଡ଼ା | ୭୫-୧୦୦ | ୪୦-୫୦ | ୭୫-୧୦୦ |
| ୪) ଧୂଳି ନାଗ (ବେଙ୍ଗା) | ୩୫-୬୫ | ୫ | ୧୦-୧୫ |
| ୫) ଡାହ୍ଣଁ ନାଗ (ଉତ୍ତରି ମଦ୍ରାଜ ବୋବା) | ୭୦-୭୫ | ପ୍ରାୟ ୧୦୦ | ପ୍ରାୟ ୧୪ (ବେଦୁର) |

—*—

Digitized by PPRACHIN, SOA

# ଦେଶ ବିଦେଶର ସାପ

ଭାରତ ବର୍ଷ ସମେତ ପୃଥିବୀର ପ୍ରାୟ ସବୁଠି ସାପ ଦେଖିବାକୁ ମିଳେ । ଗ୍ରେଟ୍‌ବ୍ରିଟେନ୍, ଅଷ୍ଟ୍ରେଲିଆ, ଆଫ୍ରିକା, ଏସିଆର ଭାରତ ପାକିସ୍ଥାନ, ବର୍ମାଦେଶ, ଇଣ୍ଡୋଚୀନା, ଚୀନ୍, ଶ୍ୟାମ, ମାଳୟ ଫିଲିପାଇନସ୍, ଶ୍ରୀଲଙ୍କା, ତୁର୍କି, ମେସୋପଟାମିଆ, ମଧ୍ୟ ପ୍ରାଚ୍ୟ ଇତ୍ୟାଦି ସ୍ଥାନ ମାନଙ୍କରେ ବିଷାକ୍ତ ଏବଂ ବିଷହୀନ ସାପମାନେ ଦେଖାଯାନ୍ତି । ବିଷାକ୍ତ ସାପମାନଙ୍କ ମଧ୍ୟରେ ନାଗ ଗୋଖ୍ରୀ, ବୋଡ଼ା ଗୋଖ୍ରୀ ଏବଂ ପ୍ରବାଳ ସାପ ଇତ୍ୟାଦି ଅନ୍ୟତମ । ବିଷହୀନ ବଡ଼ ଧରଣର ସାପମାନଙ୍କ ମଧ୍ୟରେ ବିଭିନ୍ନ ପ୍ରକାରର ଅଜଗର (python) ବୋଆ (Boa), ଆନାକୋଣ୍ଡା ଅଥବା ସୁକୁରୁଜୁ (Anaconda or Sucuruju) ଅନ୍ୟତମ । ସେମାନଙ୍କର ଓଜନ ପ୍ରାୟ ୧୦ ମେଣରୁ ୧୧୨ ଏବଂ ଲମ୍ବ ପ୍ରାୟ ୭—୧ ମିଟର ପର୍ଯ୍ୟନ୍ତ ହୋଇଥାଏ । ବିଷହୀନ ଶ୍ରେଷ୍ଠ ସାପ ମାନଙ୍କ ମଧ୍ୟରେ ଅତି ପରିଚିତ ଢ଼ମଣା ସାପ ଅନ୍ୟତମ । ନିମ୍ନରେ ଅନେକ ଭିନ୍ନ ଭିନ୍ନ ପ୍ରକାର ସାପ ଏବଂ ପୃଥିବୀରେ ସେମାନଙ୍କର ପ୍ରାପ୍ତି ସ୍ଥାନ ବିଷୟରେ ଅନୁଧ୍ୟାନ କରିବା ।

## ୧ । ଭିନ୍ନ ଭିନ୍ନ ପ୍ରକାର ସାପର ପ୍ରକାର ଭେଦ ଏବଂ ପୃଥିବୀରେ ପ୍ରାପ୍ତି ସ୍ଥାନ—

| କ ପ୍ରକାର ସାପ ସେମାନଙ୍କର ଭିନ୍ନ ନାମ । | ପୃଥିବୀର କେଉଁ ସ୍ଥାନମାନଙ୍କରେ ପ୍ରାପ୍ତ ହୁଅନ୍ତି । |
|---|---|
| ନାଗ (Cobra) | |
| କ) ସାଧାରଣ ନାଗ (Common Cobra) | ଭାରତ, ଶ୍ରୀଲଙ୍କା, ବର୍ମା, ଶ୍ୟାମ, ମାଳୟ, ପେଣନସୁଲ, ଫିଲିପାଇନସ, ଇଣ୍ଡୋଚୀନା, ଚ୍ୟାନ (ଚୀନ ଦ୍ୱୀପପୁଞ୍ଜ) ଏବଂ ମାଳୟ ଆର୍କିପେଲଗୋ |
| ଖ) ଅହିରାଜ ବା ରାଜନାଗ (King Cobra) | ଭାରତ, ବର୍ମାଦେଶ ଏବଂ ମାଳୟ ପେଣନସୁଲ |
| ଗ) କେପ୍‌ନାଗ (cape cobra) | ଦକ୍ଷିଣ ଆଫ୍ରିକାର କେପ୍‌ପ୍ରଦେଶ |
| ଘ) ରିଂଗାଲ ବା ବିଷ ଫୋପାଡ଼ିବା ନାଗ (Ringhal) | ଆଫ୍ରିକା, (ଏମାନେ କେବଳ ଡିମ୍ବ ଦିଅନ୍ତି) |
| ଙ) ମାମ୍ବା ବା ଗଛ ନାଗ | ଗୀଷ୍ମ ପ୍ରଧାନ ଏବଂ ଦକ୍ଷିଣ-ଆଫ୍ରିକା |

Digitized by PPRACHIN, SOA

**ବୋଡ଼ା—(Viper)**

| | |
|---|---|
| କ) ଏକସ ଅଥବା କରତକାଠବୋଡ଼ା (Echis or saw Scaled (viper) | ଶ୍ରୀଲଙ୍କା, ତୁର୍କିସ୍ଥାନ, ମେସୋପୋଟାମିଆ ଏବଂ ଉତ୍ତର ଆଫ୍ରିକା |
| ଖ) ରସେଲ ବୋଡା Russels Viper) | ଭାରତ, ଶ୍ରୀଲଙ୍କା, ବର୍ମା, ଶ୍ୟାମ ସୁମାତ୍ରା ଏବଂ ଜାଭା |
| ଗ) ଲେଭାଣ୍ଟିନ ବୋଡ଼ା (Levantine viper) | ମଧ୍ୟ ପ୍ରାଚ୍ୟ, ଦକ୍ଷିଣ ପୂର୍ବ ଇଉରୋପ ଏବଂ ଉତ୍ତର ଆଫ୍ରିକା |

**କୋରାଲସାପ**

| | |
|---|---|
| (Coral snake) ଧଳାଡୋରିଆ କୋରାଲ ସାପ (White striped Coral snake Sc. name-Doliophis birigratus | ଭାରତ ଓ ବର୍ମାଦେଶ (ଏମାନଙ୍କ ପେଟ ମୁଣ୍ଡ ଏବଂ ଲାଞ୍ଜ ଲାଲ ରଙ୍ଗର ହୋଇ-ଥାଏ । ପିଠିରେ ଘନ କଳା ରଙ୍ଗରେ ୪ଟି ଧଳା ରେଖା-ଥାଏ । |
| ଡୋରିଆ କୋରାଲ ସାପ (Belted Coral snake) Sc.name—Doliophis tntestinalis | ଭାରତ, ବର୍ମା, ଏବଂ ମାଳୟ |

Digitized by PPRACHIN, SOA

| କି ପ୍ରକାରର ସାପ, ସେମାନଙ୍କର ବୈଜ୍ଞାନିକ ନାମ | ଭାରତରେ କେଉଁ ସ୍ଥାନରେ ପ୍ରାପ୍ତ ହୁଅନ୍ତି । |
|---|---|
| ବିବରନ୍‌ର କୋରାଲ ସାପ<br>(Bibron's Coral snake)<br>Sc. name—Calliophis bibroni | ଭାରତ (ପଶ୍ଚିମ ଘାଟ) |
| ମାକେଲ୍ୟାଣ୍ଡର କୋରାଲ ସାପ<br>(Maccleland' Coral snake)<br>Sc name—Calliophis maccelandi | ନେପାଳ, ସିକିମ, ବର୍ମା, ଭାରତ, (ଆସାମ) |
| ସରୁଆ କୋରାଲ ସାପ<br>(Slehder Coral Snake<br>Sc. name—Calliophis trimaculatus— | ଭାରତ (ଦକ୍ଷିଣ ଭାରତ) ବଙ୍ଗଳା ଏବଂ ବର୍ମା |
| ଛୋଟ ଦାଗ ଗୁଡ଼ିଆ କୋରାଲ ସାପ<br>(Small spotted Coral snake)<br>Sc. name—Calliophis maculiceps | ନେପାଳ ବର୍ମାଦେଶ |
| ସାଧାରଣ ଭାରତୀୟ କୋରାଲ ସାପ.<br>(Common Indian Coral snake or Gunoher's Coral snake)<br>Sc. name—Hemibungarus nigriscens | ଭାରତ |
| ଆଫ୍ରିକୀୟ କୋରାଲ ସାପ<br>Sc. name—Aspidelaps sp. and Elapechis | ଆଫ୍ରିକା |
| ଅଜଗର ସାପ | |
| ଜାଲିକାଥିବା ଅଜଗର<br>(Reticulated phtnon) | ମାଲୟ ଦ୍ୱୀପପୁଞ୍ଜର ଏବଂ ଇଣ୍ଡୋନେସିଆ |

Digitized by PPRACHIN, SOA

| କ ପ୍ରକାରର ସାପ, ସେମାନଙ୍କର ଭିନ୍ନ ନାମ | ପୃଥିବୀରେ କେଉଁ ସ୍ଥାନରେ ପ୍ରାପ୍ତ ହୁଅନ୍ତି । |
|---|---|
| ପଥୁରିଆ ଅଜଗର (Rocky python) | ଟ୍ରପିକାଲ ଏବଂ ଦକ୍ଷିଣ ଆଫ୍ରିକା |
| ପଶ୍ଚିମ ଆଫ୍ରିକାର ଅଜଗର | ପଶ୍ଚିମ ଆଫ୍ରିକା |
| Scrub python (ସ୍କ୍ରବ···ଅଜଗର) | ଉତ୍ତର କୁଇନସ୍‌ଲ୍ୟାଣ୍ଡ (ଅଷ୍ଟ୍ରେଲିଆ) |
| ବୋଆ ସାପ<br>Sc. name Boa Bonstrictor | ଗ୍ରୀଷ୍ମ ପ୍ରଧାନ ଦେଶ ମେକ୍ସିକୋଠାରୁ ବ୍ରାଜିଲ |
| ଆନାକୋଣ୍ଡା ବା ସୁକୁରୁଜୁ<br>(Anaconda or Sucuruju)<br>(ବୋଆ ଜାତୀୟ ସାପ) | ବ୍ରାଜିଲ, ଗାଇ ଗିଆନା ଉତ୍ତର ପଶ୍ଚିମ ପେରୁ |

## ବିଦେଶର ସାପ

ନିମ୍ନରେ କେତୋଟି ବିଦେଶର ବିଶିଷ୍ଟ ସାପ ବିଷୟରେ ବର୍ଣ୍ଣନା ଦିଆଗଲା । ସେହି ଦେଶମାନଙ୍କ ମଧ୍ୟରେ ଗ୍ରେଟ୍‌ବ୍ରିଟେନ, ଆଫ୍ରିକା ଏବଂ ଅଷ୍ଟ୍ରେଲିଆ ଅନ୍ୟତମ । ସେହି ଦେଶମାନଙ୍କର ଜାତୀୟ ସାପ ସମ୍ବନ୍ଧ ବିଷୟରେ ଜାଣିବାର କଥା ।

## (କ) ଗ୍ରେଟ୍‌ବ୍ରିଟେନର ସାପ

ସାଧାରଣତଃ ଦେଖାଯାଉଥିବା ବୋଡ଼ା ସାପ ଏଠାରେ Vipera berus ନାମରେ ପରିଚିତ । ଏହା ହିଁ ଏକମାତ୍ର ବିଷାକ୍ତ ସାପ ଏଠାରେ ଦେଖିବାକୁ ମିଳେ । ଅନ୍ୟଗୁଡ଼ିକ ବିଷହୀନ ସାପ । ସେମାନେ ହେଲେ ନଳ ବା ଘାସ ସାପ ।

**୧—ନଳି ବା ଘାସ ସାପ (Sc. name Tropidonotus natrix)**

ଏଗୁଡ଼ିକ ସାଧୁଆ ରଙ୍ଗର ସାପ, ପିଠିରେ ଏବଂ ବେକରେ ଛୋପ ଛୋପିଆ ଦାଗ ଥାଏ । ବେକର ଦୁଇପଟେ ଉଜ୍ଜ୍ୱଳ ହଳଦିଆ ଦାଗ ବିଶିଷ୍ଟ, ପେଟ କଳା ଏବଂ ମାଟିଆ (grey) । ଏମାନଙ୍କର ଲମ୍ବ ପ୍ରାୟ ୦.୯ ମିଟର କିନ୍ତୁ ଏମାନେ ବଢ଼ି ୧.୫ ମିଟର ବା ଊର୍ଦ୍ଧ୍ୱ ହୁଅନ୍ତି । ଅଟକାଇ ରଖିଲେ ଏମାନେ ହିଁ ହିଁ ଶବ୍ଦ କର ବାହେର ହୁଅନ୍ତି କିନ୍ତୁ କାମୁଡ଼ିବାର ଦେଖାଯାଏ ନାହିଁ । ସ୍କଟଲ୍ୟାଣ୍ଡରେ

Digitized by PPRACHIN, SOA

ଏମାନଙ୍କୁ ଦେଖିବାକୁ ମିଳେ ନାହିଁ । ଏମାନେ ମଣିଷଙ୍କର କୌଣସି କ୍ଷତି କରନ୍ତି ନାହିଁ ବରଂ ମୂଷାମାନଙ୍କୁ ଖାଇ ତାଙ୍କ ସଂଖ୍ୟା ନିୟନ୍ତ୍ରଣ କରନ୍ତି ।

ଏମାନେ ସାଧାରଣତଃ ବେଙ୍ଗ (ପାଣି ବା ବାଲି ବେଙ୍ଗ) ମାଛ ଏବଂ ମୂଷା ଖାଇବାକୁ ଭଲ ପାଆନ୍ତି । ମାଈ ସାପ ପ୍ରାୟ ୧୦-୩୦ଟି ଅଣ୍ଡା ଦିଏ । ଅଣ୍ଡା ଗୁଡ଼ିକ ନରମ, ପତଳା ଆବରଣ ଯୁକ୍ତ, ଚିକ୍କଣ ଧଳା ରଙ୍ଗର ଏବଂ ଏହା ଖୋଳରେ ଦଉଡ଼ି ବା ସୂତାପରି ଏକାଠି ହୋଇ ଲାଗିରହିଥାଏ । ସାପମାନେ ଗୋବର ମାଟି, ପତ୍ରସ୍ତୂପ ଅଥବା ଗର୍ତ୍ତମାନଙ୍କରେ ଅଣ୍ଡା ଦିଅନ୍ତି । ଘାସ ସାପମାନେ ନିରୀହ ଏବଂ ଏମାନେ କେବେହେଁ କାମୁଡ଼ନ୍ତି ନାହିଁ । ଅବଶ୍ୟ କେତେ କେତେ ସମୟରେ ଭୟଙ୍କର ଦେଖାଯାନ୍ତି ଏବଂ ଅନ୍ୟ ବିଷ ସାପମାନଙ୍କର ଆଚରଣ ଦେଖାନ୍ତି, ତଥାପି ଏମାନେ ସମ୍ପୂର୍ଣ୍ଣ ନିରାପଦମୟ ସାପ । ଏହି ସାପଙ୍କର ମଳଦ୍ୱାର (Cloaca) ଏବଂ ମଳଦ୍ୱାର Anus ରନ୍ଧ୍ରରୁ ଏକ ପ୍ରକାର ଦୁର୍ଗନ୍ଧ ଯୁକ୍ତ ପଦାର୍ଥ ନିର୍ଗତ ହୁଏ ଯାହା ଏମାନଙ୍କ ଆତ୍ମରକ୍ଷା ଉଦ୍ଦେଶ୍ୟରେ ସହାୟକ ହୁଏ ।

୨—ମସୃଣ ସାପ—Sc. name (Coronella austriaca)—ଏହି ସାପଗୁଡ଼ିକ ଗ୍ରେଟବ୍ରିଟେନରେ ଅଧିକ ଦେଖାଯାଏ ଏବଂ ଇଉରୋପ ମହାଦେଶରେ ବହୁଳଭାବେ ପରିଲକ୍ଷିତ ହୁଏ । ଏହା ପ୍ରାୟ ଲମ୍ବରେ ୦.୭ ମିଟର । ଏଗୁଡ଼ିକର ରଙ୍ଗ ଉଜ୍ଜଳ ହଳଦିଆ (Brownish yellow) ଅଥବା ନାଲିଆ ଧୂସର (Reddish brown) ଏମାନେ ଅନ୍ୟ ସରୀସୃପ ବା ମୂଷା ଖାଇବାକୁ ଭଲପାଆନ୍ତି । ଶତ୍ରୁର ସାମନା ସାମନି ହେଲେ ଏମାନେ ଭୟଙ୍କର ରୂପ ଧାରଣ କରିବା ସଙ୍ଗେ ସଙ୍ଗେ କୋଟିଏ ପ୍ରକାର ଅପ୍ରାକୃତିକ ଗନ୍ଧ ଦେଇଥାନ୍ତି ତଥା ଦେହରୁ ପ୍ରାୟ ଉପର ଭାଗ ଉପରେ ଲମ୍ବେଇ ଠିଆହୋଇ ପାରନ୍ତି । ହଁ ହଁ ଶବ୍ଦ ସାଙ୍ଗରେ ନିଜକୁ ବାହାରକୁ ବାହାର କରି ପକାନ୍ତି । କିନ୍ତୁ ଏମାନେ ମଣିଷ ପ୍ରତି ନିରାପଦ । ଏଗୁଡ଼ିକ ଛୁଆ ଜନ୍ମ କରନ୍ତି ।

## (ଖ) ଆଫ୍ରିକାର ସାପ

ବିଷଧର ସାପମାନଙ୍କ ମଧ୍ୟରେ ପ୍ରଧାନତଃ ଗୋଖର ବା ନାଗ (Cobra) ରିଂଗାଲ ସାପ (Ringhal), ବୋଗନ ସାପ, ଗାର୍ଟର ସାପ (Garter), ଗଛନାଗ (Tree Cobra or Mamba) ଆଦି ବହୁତ ପ୍ରକାରର ବୋଡ଼ା ଜାତୀୟ ସାପ ଦେଖିବାକୁ ମିଳେ । ବୋଡ଼ା ମଧ୍ୟରେ ପଫ୍ ଆଡ଼ର (Puff Adder) ଅନ୍ୟତମ । ଏହା ଛଡ଼ା ଅନେକ ପ୍ରକାରର ବିଷଧର ସାପ ମଣିଷକୁ ଭୟଭୀତ କରିପାରେ କିନ୍ତୁ ଆତ୍ମନାଶ କରିପାରେ ନାହିଁ । ଏଗୁଡ଼ିକ ହେଲ ପଛ ବିଷଦାନ୍ତ

Digitized by PPRACHIN, SOA

ବୁମ୍‌ସ୍ଲାଙ୍ଗ ( Back fanged Boom slang ) ଏବଂ ସ୍କାପଷ୍ଟିକର (Schaap steker)

ତାଛଡ଼ା ଲୋକଙ୍କ ମଧ୍ୟରେ ସୁପରିଚିତ ଭଉର (Brown) ଏବଂ କଳା ନାଗ ଅନ୍ୟତମ । କେତେକ ସ୍ଥଳେ ନାଗ ଏବଂ ଶଙ୍ଖଚୂଡ଼ ସାପକୁ ବିଷ ଫିଙ୍ଗିବା ନାଗ ମଧ୍ୟ କୁହାଯାଏ । (Spitting Cobra) ଅର୍ଥାତ୍ ଏହି ସାପଗୁଡ଼ିକ ସେମାନଙ୍କ ବିଷଗ୍ରନ୍ଥିରୁ ବିଷକୁ କିଛି ଦୂରକୁ ଫିଙ୍ଗି ପାରନ୍ତି । ଯଦି ଏହି ବିଷ ମଣିଷମାନଙ୍କ ଅକ୍ଷତ ଚର୍ମରେ ପଡ଼େ ତେବେ ବିଶେଷ କ୍ଷତି କରିପାରେ ନାହିଁ । ଯଦି ଏହି ବିଷ ଆଖି ଭିତରେ ପଡ଼ିଯାଏ ତେବେ ଆଖି ବହୁତ ଜଳେ ଏବଂ ଫୁଲି ଉଠେ ।

ଆଫ୍ରିକାରେ ଗୋଟିଏ ବିଶେଷ ପ୍ରକାରର ସାପ ଦେଖାଯାନ୍ତି । ସେମାନେ ଅନ୍ୟ ପକ୍ଷୀଙ୍କ ଅଣ୍ଡା ଖାଇ ଥାଆନ୍ତି । ଏଣୁ କରି ଏମାନଙ୍କୁ ଅଣ୍ଡାଖିଆ ସାପ (Egg eating snake) କୁହାଯାଏ । ଏମାନଙ୍କ ବୈଜ୍ଞାନିକ ନାମ ହେଲା Dasypeltis scabra ଅଣ୍ଡାକୁ ପୂରାପୂରି ଗିଳି ପକାନ୍ତି ଏବଂ ପରେ ଅଣ୍ଡାର ଖୋଳପାକୁ ଗଳ ଦେଶରେ ଥିବା ଦାନ୍ତ ସାହାଯ୍ୟରେ ଭାଙ୍ଗି ପକାଇ ପଦାକୁ ଫୋପାଡ଼ି ଦିଅନ୍ତି ।

## ଅଷ୍ଟ୍ରେଲିଆର ସାପ

ଭୟାନକ ବିଷଧର ସାପମାନଙ୍କ ମଧ୍ୟରେ ଏଠାରେ କେତେ ପ୍ରକାରର ସାପ ଅଛନ୍ତି । ସେମାନେ ସମସ୍ତେ ଗୋଟିଏ ସାପ ପରିବାରର ଅନ୍ତର୍ଭୁକ୍ତ । ସେମାନଙ୍କ ମଧ୍ୟରେ ତମ୍ବା ମୁଣ୍ଡିଆ (Copper headed) ଭଉର ସାପ (Brown snake) ବାଘିଆ ସାପ (Tiger snake) କଳାସାପ (Black snake) ଏବଂ ମରଣ ଅଡ଼ର (Death Adder) ଅନ୍ୟତମ ।

ଏଠାରେ ପ୍ରାୟ ୧୦୫ ପ୍ରକାରର ସାପ ଦେଖାଯାଏ । ସମସ୍ତେ କଲ୍ୟୁବ୍ରିଡ୍ ପରିବାରର (Colubrid family) । ବାଘୁଆ ସାପ (Tiger snake ଲମ୍ବା ୧.୭ ମିଟର, କଳାସାପ (Black snake) ଲମ୍ବା ୧.୮—୨.୧ ମିଟର ତମ୍ବା ମୁଣ୍ଡିଆ ବା ସୁନ୍ଦର ସାପ Copper headed or Superb snake) ଲମ୍ବା ୧.୫ ମିଟର । ସବୁଠାରୁ ବଡ଼ ସାପ—ତାଇପାନ ସାପ (Taipan snake) ଏଗୁଡ଼ିକ ଲମ୍ବରେ ୩ ମିଟର ହୋଇଥାନ୍ତି । ଏକାଥରେ ଏମାନେ ୩୫ ମି.ଗ୍ରା ବିଷ ବାହାର କରନ୍ତି ଯାହା ୨୦ ବା ଅଧିକ ଲୋକଙ୍କୁ ମାରି ପକାଇ ପାରେ ।

Digitized by PPRACHIN, SOA

ଏହା ଛଡ଼ା ପଛଦାନ୍ତି (Back Fanged) କଲୁବ୍ରିଡ୍ ପରିବାରର ସାପ ଅଷ୍ଟ୍ରେଲିଆରେ ଦେଖାଯାଆନ୍ତି ।

ବିଷହୀନ ସାପ—Non-Poisonous snake)— ଉପରେ ବର୍ଣ୍ଣିତ ବହୁ ପ୍ରକାରର ବିଷଯୁକ୍ତ ସାପଙ୍କ ବିଷୟରେ ଜାଣିବା ପରେ ପୃଥିବୀର ବିଭିନ୍ନ ଦେଶ ବିଦେଶର ବିଷହୀନ ସାପ ମାନଙ୍କ ବିଷୟରେ ଜାଣିବା କଥା । କ୍ରମରେ ସେମାନଙ୍କ ସମ୍ବନ୍ଧରେ ବର୍ଣ୍ଣନା ଦିଆଗଲା । ବିଷହୀନ ସାପଙ୍କ ମଧ୍ୟରେ ଅଜଗର, ବୋଆ, ଆନାକୋଣ୍ଡା ବା ସୁକୁରୁଜୁ (Anaconda or sucuruju ଅନ୍ୟତମ । ଘରଚିଆ ଧାମଣା Rat snake) ଶ୍ରେଷ୍ଠ ସାପ ଗୋଷ୍ଠୀର ଏବଂ ଏମାନେ ପ୍ରାୟ ସବୁ ଜାଗାରେ ଦେଖାଯାନ୍ତି କିନ୍ତୁ ଏଠାରେ ଅନେକ ବଡ଼ ସାପ ଅଜଗର ଇତ୍ୟାଦି ବିଷୟରେ କିଛି ଜାଣିବାର କଥା ।

ଜାଲି ଜାଲିଆ ଅଜଗର—( Reticulaed python ) ମାଳୟ ପେଣିନସୁଲାର ଏବଂ ଇଣ୍ଡୋନେସିଆରେ ଦେଖାଯାଏ । ପଥୁରିଆ ଅଜଗର (Rock Pythons) ଗ୍ରୀଷ୍ମପ୍ରଧାନ (Tropical) ଏବଂ ଦକ୍ଷିଣ ଆଫ୍ରିକାରେ ଦେଖାଯାଏ ପଶ୍ଚିମ ଆଫ୍ରିକାରେ ଅଜଗର, ଉତ୍ତର କୁଇନ୍ସଲାଣ୍ଡ (ଅଷ୍ଟ୍ରେଲିଆ)ରେ ସ୍କ୍ରବ ଅଜଗର (scrub) ଦେଖାଯାନ୍ତି । ଅଜଗର ମାନଙ୍କ ଲମ୍ବ ୬-୯ ମିଟର ହୋଇଥାଏ ଏବଂ ଓଜନ ପ୍ରାୟ ୧୦-୧୧ କେଜି ପର୍ଯ୍ୟନ୍ତ ହୁଏ । ଗ୍ରୀଷ୍ମପ୍ରଧାନ (Tropical) ମେକ୍ସିକୋ ଠାରୁ ବ୍ରାଜିଲ ପର୍ଯ୍ୟନ୍ତ ବୋଆ ସାପ ଦେଖିବାକୁ ମିଳେ ଏମାନଙ୍କ ବୈଜ୍ଞାନିକ ନାମ Boa constrictor ବ୍ରାଜିଲ, ତ୍ରିନିଦାଦ ଗିଆନା ଉତ୍ତର ପଶ୍ଚିମ ପେରୁରେ ଆଉ ଗୋଟିଏ ପ୍ରକାରର ବିଷହୀନ ସାପ ଦେଖିବାକୁ ମିଳେ, ସେମାନଙ୍କୁ ଆନାକୋଣ୍ଡା ଅଥବା ସୁକୁରୁଜୁ କୁହାଯାଏ । ଏଗୁଡ଼ିକ ବୋଆ ଜାତୀୟ ସାପ ।

●

Digitized by PPRACHIN, SOA

# ସାପ କାମୁଡ଼ା ଚିକିତ୍ସା

ଆମ ଦେଶରେ ସାପ କାମୁଡ଼ା ଏକ ସ୍ୱାସ୍ଥ୍ୟ ସମସ୍ୟା । ପ୍ରତି ବର୍ଷ ସାରା ପୃଥିବୀରେ ପ୍ରାୟ ପଚାଶ ହଜାର ଲୋକ ବିଷାକ୍ତ ସାପ କାମୁଡ଼ାରେ ମରନ୍ତି ଏବଂ ସେଥିରୁ ଅଧା, ପ୍ରାୟ କୋଡ଼ିଏ ହଜାର ଲୋକ କେବଳ ଭାରତ ବର୍ଷରେ ହିଁ ମରି ଥାଆନ୍ତି । ଆମ ଓଡ଼ିଶା ପ୍ରଦେଶରେ ପ୍ରତିବର୍ଷ କେତେ ଲୋକ ସାପ କାମୁଡ଼ାରେ ମରନ୍ତି ତାହା ଜଣାପଡ଼ି ନାହିଁ । ଓଡ଼ିଶାରେ ବର୍ଷକୁ ପ୍ରାୟ ସତର ହଜାର ଲୋକଙ୍କୁ ଭିନ୍ନ ସମୟରେ ବିଷାକ୍ତ କିମ୍ବା ବିଷହୀନ ସାପ କାମୁଡ଼ି ଥାଆନ୍ତି । ସାପ କାମୁଡ଼ାରେ ମରିବା ଲୋକଙ୍କ ସଂଖ୍ୟା ବର୍ଷକୁ ଅନୁମାନିକ ପ୍ରାୟ ଛଅ ହଜାର ହେବ ।

ଏହି ପରିପ୍ରେକ୍ଷୀରେ ଆମେମାନେ ଯୁକ୍ତରାଷ୍ଟ୍ର ଆମେରିକାରେ ସାପ କାମୁଡ଼ା କଥା ଆଲୋଚନା କରିବା । ଓଡ଼ିଶାରେ ଚାରିକୋଟି ଲୋକ, ଯୁକ୍ତରାଷ୍ଟ୍ର ଆମେରିକାରେ ଚବିଶକୋଟି ଲୋକ । ସେ ଦେଶରେ ସ୍ୱାସ୍ଥ୍ୟ ସେବା ଅତି ଉନ୍ନତ ଧରଣର । ବହୁତ ଲୋକ ଶିକ୍ଷିତ । ତେଣୁ ସବୁ କଥା ପରୀକ୍ଷା ନିରୀକ୍ଷା ହୋଇ ଲେଖା ହୋଇ ରହେ । ସାରା ଯୁକ୍ତରାଷ୍ଟ୍ର ଆମେରିକାରେ ବର୍ଷକୁ ପ୍ରାୟ ୭୦ ହଜାର ଲୋକଙ୍କୁ ବିଷାକ୍ତ ସାପ କାମୁଡ଼ନ୍ତି । ସେଥିରୁ ମାତ୍ର ତିରିଶ ଜଣ ଲୋକ ମୃତ୍ୟୁ ମୁଖରେ ପଡ଼ନ୍ତି । କୋଟିରେ ଗୋଟିଏ । କିନ୍ତୁ ଆମ ରାଜ୍ୟରେ କୋଟିରେ ହଜାର ।

ଏହାର କାରଣ ତାଙ୍କ ଦେଶର ଉନ୍ନତମାନର ଚିକିତ୍ସା ପ୍ରଣାଳୀ ନୁହେଁ । କାରଣ ସାପ କାମୁଡ଼ିବା ଚିକିତ୍ସା ପାଇଁ ଯାହା କିଛି ଅତ୍ୟାଧୁନିକ ଚିକିତ୍ସା ଦରକାର ସବୁ ଆମ ଦେଶରେ ଓ ଆମ ରାଜ୍ୟରେ ବି ଅଛି । କିନ୍ତୁ ଆମ ରାଜ୍ୟରେ ଏତେ ଅଧିକ ମୃତ୍ୟୁର କାରଣ—ଆମର ଅନ୍ଧ ବିଶ୍ୱାସ । ବିଷାକ୍ତ ସାପ କାମୁଡ଼ିଲେ ଆମେ ସଙ୍ଗେ ସଙ୍ଗେ ସେହିଭଳି ଲୋକଙ୍କୁ ଆଧୁନିକ ଡାକ୍ତରୀ ଚିକିତ୍ସା ପାଇଁ ନ ନେଇ ଗୁଣି ଗାରେଡ଼ି, ଝଡ଼ା ଫୁଙ୍କା, କାଟପାଣି, ଠାକୁରଙ୍କ ପାଖେ ଧରଣା ପକାଇବା, ଦେହ ଚୋପା କାଟିବା ଭଳି ଅନ୍ଧ ବିଶ୍ୱାସର ସାହାଯ୍ୟ ନେଇଥାଉ । ଫଳରେ ଏହି ସମୟ ମଧ୍ୟରେ ବିଷ ଶରୀରର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ଗୁଡ଼ିକୁ ବ୍ୟାପି ଯାଏ ଏବଂ ମୃତ୍ୟୁ ଭଳି ବିପଦମୟ ଫଳ ହୋଇଥାଏ ।

Digitized by PPRACHIN, SOA

ଏହି ଅନ୍ଧ ବିଶ୍ୱାସ ପାଇଁ ଆମର ଅନେକ କଥା, ସାହିତ୍ୟ ଲୋକଙ୍କ ଗୀତ, ସିନେମା, ଥିଏଟର, ଯାତ୍ରା, ତାମସା, ଲୋକଙ୍କ ମୁହଁରେ ଶୁଣିଥିବା ଗୁଜବ ଅନେକାଂଶରେ ଦାୟୀ । ସାପ କାମୁଡ଼ିଲେ ଅମୃତ ଶୁଣିଥିବା ଟେଲିଗ୍ରାମ ପଠାଇଦେଲେ ବିଷ ଆପେ ଓହ୍ଲାଇଯିବ କିମ୍ବା ସାମନାରେ ଗୁଣିଆ ମାନ୍ତ୍ରୁମା ବଳାଇ କାମୁଡ଼ିଥିବା ସାପକୁ ଡାକିଆଣି ବିଷକୁ ଚୁଷି ଦେଲେ ରୋଗୀ ଉଠନ୍ତି—ଏଭଳି ଗୁଜବ ସବୁ ମିଛ । ମୋଟ ଉପରେ ଆମର ଚିକିତ୍ସା ବ୍ୟବସ୍ଥା ଉପରେ ଭରସା ରଖି ସବୁ କ୍ଷେତ୍ରରେ ଜୀବନ ବଞ୍ଚାଇବା ସମ୍ଭବ ନୁହେଁ । ଫଳରେ ଶରୀରରେ ବିଷ ବ୍ୟାପିବାର ବହୁ ମୂଲ୍ୟ ସମୟ ଟିକିଏ ଅପଚୟ ନକରି ପ୍ରାଥମିକ ଚିକିତ୍ସା ପରେ ଯଥା ଶୀଘ୍ର ଆଧୁନିକ ଚିକିତ୍ସାର ସୁବିଧା ନେବା ଉଚିତ । ଏହା ହେଲେ ରୋଗୀ ଶରୀରରୁ ସ୍ୱତନ୍ତ୍ର ନଥିବା ଯୁକ୍ତିଯୁକ୍ତ ଅନେକଭାବରେ ସେହିଭଳି ବିଷାକ୍ତ ସାପ କାମୁଡ଼ାରେ ମୃତ ଲୋକ ମରୁଛନ୍ତି, ଆମ୍ଭେମାନେ ସେଥି ସୁବିଧା ସୁଯୋଗ ପାଇ ପାରିବା ।

## ସାପଙ୍କ ଜାତି ଓ ବିଷଧର ସର୍ପ

ଆମ ପୃଥିବୀରେ ପ୍ରାୟ ତିନି ହଜାର ପାଞ୍ଚଶହ ଜାତିର ସାପ ଅଛନ୍ତି । ସେଥିରୁ ତିନିଶହ ମାତ୍ର ତିରିଶ ପଚାଶ ଜାତିର ସାପ ବିଷଧର । ଏପରିକି ୧୨ ଭାଗ ସାପଙ୍କର ବିଷ ନାହିଁ । ଏହି ବିଷାକ୍ତ ସାପଙ୍କୁ ପାଞ୍ଚଟି ପରିବାରରେ ବିଭକ୍ତ କରାଯାଇଥାଏ । ସେଗୁଡ଼ିକର ବୈଜ୍ଞାନିକ ପରିଭାଷାରେ ନାମ ହେଲା— ଇଲାପିଡ଼୍, ଭାଇପେରିଡ଼୍, ହାଇଡ୍ରୋଫିଡ଼୍, କ୍ରୋଟାଲିଡ଼୍ ଓ କଲ୍ୟୁବ୍ରିଡ଼୍ ।

୧ । ଇଲାପିଡ଼୍—ନାଗ, ଗୋଖର, ଚିତି, ମମ୍ବା ସାପ, ପ୍ରବାଳ ସାପ, ତାଇପାନ୍ ସାପ । ଏହି ବିଷାକ୍ତ ସାପମାନେ ୟୁରୋପ ମହାଦେଶ ବ୍ୟତୀତ ପୃଥିବୀର ସବୁ ସ୍ଥାନରେ ଦେଖାଯାଆନ୍ତି । 'ତାଇପାନ' ସାପ ଅଷ୍ଟ୍ରେଲିଆର କୁଇନ୍ସଲାଣ୍ଡ ପ୍ରଦେଶରେ ଅଧିକ ଦେଖାଯାଆନ୍ତି । ଏମାନେ ଅତି ବିଷାକ୍ତ ସାପ । ବଡ଼ ସାପର ଲମ୍ବା ୧୨ ଫୁଟ ପର୍ଯ୍ୟନ୍ତ ହୋଇଥାଏ । ଥରେ କାମୁଡ଼ିଲେ ଏହି ସାପ ଯେତିକି ବିଷ ବାହାର କରେ ସେଥିରେ ଦୁଇଲକ୍ଷ ମୂଷା ମରି ଯାଇପାରିବେ । ଏହି ସାପ କାମୁଡ଼ିବାର କେତେ ସେକେଣ୍ଡ ମଧ୍ୟରେ ଜଣେ ଲୋକ ମୃତ୍ୟୁ ବରଣ କରିଥାଏ । ଆମ ଓଡ଼ିଶାରେ ନାଗ, ଗୋଖର ଓ ଚିତି ସାପଙ୍କ ପ୍ରକୋପ ବେଶୀ ।

୨ । ଭାଇପେରିଡ଼୍—ବୋଡ଼ା ସାପ, ଚଠ ସାପ, ରଣା ସାପ ।

ଏହି ସାପ ମାନେ ଅଷ୍ଟ୍ରେଲିଆ ଛଡ଼ା ପୃଥିବୀରେ ଅନ୍ୟ ସବୁଠି ଦେଖାଯାନ୍ତି । ଏହି ସାପ ଘର ଓ ଜଳବାଡ଼ିରେ ଅଧିକ ରହୁଥିବାରୁ ବୋଡ଼ା କାମୁଡ଼ା ଓଡ଼ିଶାରେ

Digitized by PPRACHIN, SOA

ଅଧିକ ଏବଂ ପ୍ରକୃତ ସ୍ଥାୟୀ ଲୋକ ମୃତ୍ୟୁର ଦଂଶାଘାତ ସ୍ପର୍ଶ କରୁଥିବା ଦେଶର ଏହି ସାପମାନେ ଅଧିକ କାମୁଡ଼ି ଥାଆନ୍ତି ।

## ୩ । ହାଇଡ୍ରୋ ଫିଡ଼ି-ସମୁଦ୍ର ସାପ

ସମୁଦ୍ର ସାପମାନେ ପ୍ରାୟ ସମସ୍ତେ ବିଷାକ୍ତ । ନୋଳିଆମାନଙ୍କୁ ଏହି ସାପମାନେ କାମୁଡ଼ିବାର ସମ୍ଭାବନା ବେଶୀ । ଅଷ୍ଟ୍ରେଲିଆର ଉତ୍ତରପୂର୍ବ ସମୁଦ୍ରରେ ପୃଥିବୀର ସବୁଠାରୁ ଅଧିକ ବିଷାକ୍ତ ସାପ ବାସ କରନ୍ତି । ସେ ସାପର ବୈଜ୍ଞାନିକ ନାମ ହାଇଡ୍ରୋଫିସ୍ ବେଲଚେରି । ଏହି ସାପ ପୂର୍ବରୁ ବର୍ଣ୍ଣିତ ସବୁ ସାପଠାରୁ ଶହେଗୁଣ ଅଧିକ ବିଷାକ୍ତ ।

## ୪ । କ୍ରୋଟାଲିଡ଼ି ଓ କୁଳବଡ଼ି

ଏହି ପରିବାରର ସାପ ଓଡ଼ିଶାରେ ଦେଖାଯାଆନ୍ତି ନାହିଁ ।

## ସାପ ବିଷ ରଖେ କେଉଁଠି ?

ସାପର ବିଷଗ୍ରନ୍ଥି ଆମମାନଙ୍କର ଲାଳ ଗ୍ରନ୍ଥି ପରି । ସାପ ତାଳୁଭାଗରେ ଅସ୍ଥି ତଳେ ଦୁଇଟି ବିଷ ଗ୍ରନ୍ଥି ଅଛନ୍ତି । ଏହି ଗ୍ରନ୍ଥି ଦୁଇଟି ମାଂସପେଶୀ ଦ୍ୱାରା ଘୋଡ଼ା ହୋଇ ରହିଥାଏ ।

ସାପ ଯେତେବେଳେ କାମୁଡ଼େ ଏହି ଗ୍ରନ୍ଥି ସଙ୍କୁଚିତ ହୋଇ ବିଷ ବାହାରେ ।

ବିଷାକ୍ତ ସାପମାନଙ୍କର ଅଛି ଏକ ଉପକରଣ ଥାଏ । ତାହା ହେଲା ବିଷ ଦାନ୍ତ । ଏହି ବିଷ ଦାନ୍ତକୁ ଇଂରାଜୀରେ 'ଫାଙ୍ଗ' କୁହାଯାଏ । ନାଗ ସାପ ଓ ବୋଡ଼ା ସାପମାନଙ୍କର ଏହି ବିଷ ଦାନ୍ତର ଗଠନ ଶୈଳୀ ଅଲଗା ଅଲଗା । ନାଗ ସାପ ବିଷଦାନ୍ତ ଉପରେ ଖୋଳ ନାଳୀଥାଏ । ସାପ ଯେତେବେଳେ କାମୁଡ଼େ ବିଷ ଗ୍ରନ୍ଥିର ନାଳୀ ବିଷଦାନ୍ତର ନାଳ ସହିତ ଯୋଗ ହୋଇଯାଏ ଏବଂ ବିଷ ସିଧେ ସିଧେ କାମୁଡ଼ା ସ୍ଥାନରେ ପଡ଼ିଯାଏ । ନାଗ ସାପର ବିଷଦାନ୍ତ ଛୋଟ ଛୋଟ ଓ ସିଧା ଉପର ପାଟିରେ ଥାଏ । ଏହି ସାପ କାମୁଡ଼ିଲା ବେଳେ ପାଟି ମେଲା କରି ଖୁବ୍ ଜୋରରେ କାମୁଡ଼େ ଏବଂ ଚମ ତଳକୁ ବିଷ ଯିବା ପର୍ଯ୍ୟନ୍ତ କାମୁଡ଼ି ଧରିଥାଏ । ସହଜରେ ଛାଡ଼େ ନାହିଁ ଓ ତାର ଶରୀରର ଓଜନ କାମୁଡ଼ା ଜାଗାରେ ପକାଏ ।

ଅପର ପକ୍ଷରେ ବୋଡ଼ା ବିଷଦାନ୍ତ ଅଲଗା ପ୍ରକାରର । ବଡ଼ ବୋଡ଼ା ସାପଙ୍କର ବିଷଦାନ୍ତ ଦୁଇ ତିନ ସେଣ୍ଟି ମିଟର ଲମ୍ବା ହୋଇଥାଏ । ପାଟି ବନ୍ଦ ଥିଲାବେଳେ

Digitized by PPRACHIN, SOA

ଏହା ଭାଲୁତା ସହିତ ସାମଞ୍ଜସ୍ୟ ଥାଏ ଏବଂ ଡାମୁଡ଼ିଲାବେଳେ ଏହା ସିଧା ହୋଇଯାଏ । ବୋଡ଼ା ସାପଙ୍କର ବିଷଦାନ୍ତର ନଳୀ ଖୋଲା ନଥାଏ । ଏହା ଉପରେ ଏକ ପତଳା ପରଦା ଥାଏ । ଫଳରେ ଡାମୁଡ଼ିଲା ବେଳେ ବିଷଗ୍ରନ୍ଥିର ନଳୀ ସିଧା ସିଧା ବିଷ ଦାନ୍ତର ନଳୀ ସହିତ ଯୋଡ଼ ହୋଇଯାଏ ଓ ଗୌଣ ବିଷ ନଷ୍ଟ ନ ହୋଇ କ୍ଷତ ସ୍ଥାନରେ ପହଞ୍ଚିଯାଏ । ବୋଡ଼ା ସାପ ଡାମୁଡ଼ି ସାରି ସଙ୍ଗେ ସଙ୍ଗେ ପଳାଇ ଯାଏ । କ୍ଷତ ସ୍ଥାନକୁ ଡାମୁଡ଼ି ଧରେନାହିଁ ।

ଆମ ରାଜ୍ୟରେ ଦେଖାଯାଉଥିବା ଏହି ପ୍ରକାର ସାପମାନଙ୍କ ମଧ୍ୟରେ ବହୁ ପ୍ରକାର ଉପଜାତିର ସାପ ଅଛନ୍ତି । ଓଡ଼ିଶାରେ ଦେଖାଯାଉଥିବା ବାଙ୍କୁନ ସାପର ଶରୀର ଚକଡ଼ା ଦୁଇ ଫୁଟ । ଏହି ସାପର ଲମ୍ବା ପ୍ରାୟ ଛଅ ଫୁଟ । ଆମର ଜଙ୍ଗଲମାନଙ୍କରୁ ଧରା ପଡ଼ିଥିବା ଅଜଗର ସାପ ତେର ଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇଥାଆନ୍ତି । ଏପର୍ଯ୍ୟନ୍ତ ମିଳାଯାଇଥିବା ସବୁଠୁ ବଡ଼ ସାପର ନାମ ଡୋଲାଗଦ୍ । ଏହି ସାପଟି ପାନାମା ଦେଶର ଉଦ୍ୟାନରେ ୧୯୬୮ ମସିହା ଏପ୍ରିଲ ୧୫ ତାରିଖରେ ମଇଦ ଭଇଲ । ଏହାର ଲମ୍ବ ଥିଲା ଅଠେଇଶ ଫୁଟ ଛଅ ଇଞ୍ଚ । ଦକ୍ଷିଣ ଆମେରିକାରେ "ଆନାକୋଣ୍ଡା" ନାମରେ ପରିଚିତ ଓ ବିଶାଳ ସାପ ଦେଖାଯାଆନ୍ତି ।

## ସାପ ବିଷ

ବର୍ତ୍ତମାନ ବୈଜ୍ଞାନିକ ସାପଙ୍କର ବିଷ ପରୀକ୍ଷା ହୋଇ ସେଥିରେ କ'ଣ ଅଛି ତାହା ଜଣା ପଡ଼ିଛି । ସାପ ବିଷ ଅମ ଜଳ ଭଳି ଈଷତ୍ ଗୋଳା, ଦେଖିବାକୁ ହଳଦିଆ ଏବଂ ଏହାର ଆପେକ୍ଷିକ ଗୁରୁତ୍ୱ ୧୦୩୦-୧୦୭୦ । ଏହି ବିଷକୁ ଶୁଖାଇ ଦେଲେ ଏହା ହଳଦିଆ ସ୍ଫଟିକ ଭଳି ଦେଖାଏ । ପାଣିରେ ଏହି ସ୍ଫଟିକକୁ ପକାଇଲେ ଏହା ସହଜରେ ମିଳାଇଯାଏ । ସବୁ ପ୍ରକାର ସାପଙ୍କ ବିଷରେ ଅଲଗା ଅଲଗା ରାସାୟନିକ ପଦାର୍ଥ ଥାଏ । ମୁଖ୍ୟତଃ ସେଗୁଡ଼ିକ ପ୍ରୋଟିନ ଓ ଏନଜାଇମ୍ ଦ୍ୱାରା ଗଠିତ ।

ନାଗ ସାପ ବିଷରେ ବହୁ ଜଟିଳ ପଦାର୍ଥ ଥାଏ । ସେଗୁଡ଼ିକ ହେଲା ସ୍ନାୟୁକୁ ଦୁର୍ବଳ କରିବା ପଦାର୍ଥ—ନ୍ୟୁରୋଟକ୍ସିନ୍, ହୃତ୍‌ପିଣ୍ଡକୁ ଦୁର୍ବଳ କରିବା ବିଷ—କାର୍ଡିଓଟକ୍ସିନ୍, ରକ୍ତକୁ ନଷ୍ଟ କରିବା ପଦାର୍ଥ—ହେମୋଲାଇସିନ୍ ଇତ୍ୟାଦି ।

ନାଗ ସାପ ବିଷରେ ସ୍ନାୟୁକୁ ଦୁର୍ବଳ କରିବା ଶକ୍ତି ଏତେ ପ୍ରବଳ ଯେ, ଶ୍ୱାସକ୍ରିୟା ସମ୍ପାଦନ କରୁଥିବା ସ୍ନାୟୁମାନେ ନିଷ୍କ୍ରିୟ ହୋଇ ରୋଗୀକୁ ମୃତ୍ୟୁ ମୁଖରେ ପକାନ୍ତି ।

Digitized by PPRACHIN, SOA

ଏହି ପ୍ରତିକ୍ରିୟା କ୍ଷଣରେ ହୁଏ । କ୍ଷଣରେ ଏକ ସାଂଘାତିକ ବିଷ । ଆମେରିକାରେ ବସବାସ କରୁଥିବା ଆଦିବାସୀମାନେ ଶର ମୁନରେ ଏହି ବିଷ ଲଗାଇ ଶିକାର କରନ୍ତି । ଏହା ଏକ ଗଛର ରସ । ଏହି ବିଷ କ୍ଷତ ସ୍ଥାନରେ ବାଜିଲେ ପ୍ରାଣୀର ସବୁ ସ୍ନାୟୁ ନିଷ୍କ୍ରିୟ ହୋଇ ଅଚଳ ହୋଇଯାଆନ୍ତି । ଫଳରେ ଶିକାର ଦୌଡ଼ି ପାରେ ନାହିଁ ଏବଂ ଧରିବା ସହଜ ହୁଏ । ନାଗ ସାପ ବିଷ ସେହିଭଳି କିନ୍ତୁ ଏତେ ଶୀଘ୍ର କାମ କରେ ନାହିଁ ଏବଂ ଔଷଧ ଦେଇ ବିଷ ନଷ୍ଟ କରିହୁଏ । ଏହି ପରିସ୍ଥିତିରେ ସାଂଘାତିକ ସାପ କାମୁଡ଼ାକୁ ଝଡ଼ା ଫୁଙ୍କା କରି ଭଲ କରିବା ଅସମ୍ଭବ ବିଶ୍ୱାସ କରନ୍ତୁ ।

ବୋଡ଼ା ସାପ ବିଷ ଅଲଗା ପ୍ରକାର । ଏଥିରେ କାମୁଡ଼ା ସ୍ଥାନରୁ ଘା ଭରିବା ପାଇଁ ଏକ ଉପାଦାନ ଥାଏ । ତାର ନାମ—ହ୍ୟାଲୁରୋନିଡେଜ୍ । ଏହା ବ୍ୟତୀତ କୈଶିକ ଶିରା ଓ ଧମନୀକୁ ଛିଡ଼ାଇ ଫଟାଇବା ଭଳି ବିଷ ହେମୋରେଜିନ, ରକ୍ତ ଜମାଟ ନ ବାନ୍ଧିବା ପାଇଁ ବିଷ ଏବଂ ହୃତ୍‌ପିଣ୍ଡର ଗତି ବଦଳାଇବାର ବିଷ ଏଥିରେ ମହଜୁଦ ଥାଏ ।

## କାମୁଡ଼ିବା ସ୍ଥାନ ଦେଖି ସାପ ଚିହ୍ନିବ କିପରି

ବିଷାକ୍ତ ସାପ କାମୁଡ଼ିଲେ ବିଷ ଦାନ୍ତର ଚିହ୍ନ ରହିବ । ଏହା ବ୍ୟତୀତ ସାପ ଦେଖି ଏହା ଜଣାପଡ଼ିବ । କିନ୍ତୁ ଦୁଃଖର କଥା ସାପମାନେ ଅନ୍ଧାର ରାତିରେ କାମୁଡ଼ି ପଳାନ୍ତି ଏବଂ ଶତକଡ଼ା ନବେ ଭାଗ କାମୁଡ଼ାରେ ସାପ ଧରାପଡ଼େ ନାହିଁ । ପୁଣି ଆମ ରାଜ୍ୟରେ ବିଷାକ୍ତ ସାପଙ୍କ ଅପେକ୍ଷା ବିଷହୀନ ସାପଙ୍କ ସଂଖ୍ୟା ବହୁତ ବେଶୀ । ଧଣ୍ଡ, ଢମଣା, କାଉଡ଼ିଆ ସାପ ଘରବାଡ଼ି, ବାଡ଼ି ଓ ପାଣି କୂଳରେ ବୁଲିବା ଦୈନନ୍ଦିନ ଦେଖାଯାଏ । ଫଳରେ ଦଶଜଣଙ୍କୁ ସାପ କାମୁଡ଼ିଲେ, ସେଥିର ନଅଜଣଙ୍କୁ ବିଷହୀନ ସାପହିଁ କାମୁଡ଼ିଥାଆନ୍ତି । ଏମାନଙ୍କୁ ଝଡ଼ା ଫୁଙ୍କା କରି ଆମ ଗୁଣିଆମାନେ ବାହା ବାହା ନିଅନ୍ତି ।

ବିଷାକ୍ତ ସାପର ପେଟ ମଝି ପିଠିଠାରୁ ବଡ଼ ବଡ଼ କାତି ଥାଏ । ଦୁଇ ପଟରେ କାତି ନଥାଏ, କିନ୍ତୁ ବିଷହୀନ ସାପଙ୍କର ପିଠି ପେଟ କାତି ସବୁ ସମାନ । ବୋଡ଼ା ଭଳି ବିଷାକ୍ତ ସାପମାନଙ୍କର ମୁଣ୍ଡ ନାସପାତି ଭଳି ଓ ବେକ ସରୁ । ନାଗସାପ ଫଣାରେ ଗଉ ପଦ, ଓଠରୁ ଭଳି ଚିହ୍ନ ଥାଏ । ମୁଣ୍ଡରେ ଉପର ପାଟିର କାତି ଆଖି ପର୍ଯ୍ୟନ୍ତ ଛୁଇଁଥାଏ । ବୋଡ଼ା ସାପର ମୁଣ୍ଡର ଦୁଇ ପଟରେ ଦୁଇଟି ଛୋଟ ଗାତ ଥାଏ । ବିଷହୀନ ସାପର କିଛି ନଥାଏ ।

Digitized by PPRACHIN, SOA

ବିଷ ସହିତ ସାପ ପାଟିରେ ବହୁତ ପ୍ରକାର ମାରକ ଜୀବାଣୁ ଥାଆନ୍ତି । ସେ ଜୀବାଣୁଗୁଡ଼ିକ କାମୁଡ଼ା ସ୍ଥାନରେ ଗଭୀର ଘା କରିପାରନ୍ତି ଏବଂ ଧନୁଷ୍ଟଙ୍କାର ଭଳି ଅତି ବିପଜ୍ଜନକ ରୋଗ ମଧ୍ୟ ସୃଷ୍ଟି କରିପାରନ୍ତି ।

ବିଷାକ୍ତ ସାପ କାମୁଡ଼ିଲା ପରେ ଦୌଡ଼ିବା ଉଚିତ ନୁହେଁ । ଦୌଡ଼ିଲେ ବିଷ ଶୀଘ୍ର ରକ୍ତ ସଞ୍ଚାଳନରେ ମିଶି ଶରୀରର ଗୁରୁତ୍ୱପୂର୍ଣ୍ଣ ଅଙ୍ଗ ମସ୍ତିଷ୍କ, ହୃଦସ୍ନାୟୁ, ଶ୍ୱାସନଳୀ, ରକ୍ତକୋଷକୁ [illegible] ବିଷାକ୍ତ କରେ । ତେଣୁ ଧୈର୍ଯ୍ୟ ଓ ସାହସ ନ ହରାଇ ଅଳ୍ପେ ଅଳ୍ପେ ଚାଲିବା ଭଲ ।

## ଲକ୍ଷଣ

ବୋଡ଼ା କାମୁଡ଼ିଲେ କାମୁଡ଼ା ସ୍ଥାନ ଅଳ୍ପ ସମୟ ମଧ୍ୟରେ ଯନ୍ତ୍ରଣା ପୋଡ଼ାଜଳା କରେ । ସେ ଜାଗା ଫୁଲି ରକ୍ତବର୍ଣ୍ଣ ଦିଶିଯାଏ । କିଛି ସମୟ ପରେ ଫୁଲା ଜାଗାରୁ ରକ୍ତ ମିଶା ଲାଳ ଲାଳ ପାଣି ବୁହେ । ଅଧିକ ସମୟ ରହିଲେ ଚର୍ମ ମରି କଳା ପଡ଼ିଯାଏ ଏବଂ ମାଂସ ପଚିବା ଆରମ୍ଭ ହୁଏ ।

ବିଷ ରକ୍ତରେ ମିଶିଲେ ମୁଣ୍ଡ ବଥା, ମୁଣ୍ଡବୁଲା, ବାନ୍ତି ଦଶ ପନ୍ଦର ମିନିଟ୍ ମଧ୍ୟରେ ଆରମ୍ଭ ହୁଏ । ଦେହରୁ ଝାଳ ବହିଯାଏ । ହାତ ପାଦ ଥଣ୍ଡା ହୋଇଯାଏ । ସନ୍ନିପାତ ଘୋଟି ଆସେ । ଅଙ୍ଗୁଳି ଟିପ ନଖ ପ୍ରଭୃତି କଳା ପଡ଼ିଯାଏ । ନାଡ଼ିର ଗତି କ୍ଷୀଣ ହୋଇଯାଏ । ରକ୍ତଚାପ ମାପିଲେ ଏହା ବହୁତ କମ ଜଣାପଡ଼େ । ପାଟିରୁ ଓ ଚମର କଟିଥିବା ସ୍ଥାନରୁ ରକ୍ତ ବୁହେ । ଦେହର ଅନ୍ୟ ଜାଗାରେ ଦାଗ ପଡ଼ିଯାଏ । କେତେକ ଲୋକଙ୍କର ଆଖି ହଳଦିଆ ପଡ଼ି କାମଳ ରୋଗର ଲକ୍ଷଣ ପ୍ରକାଶ ପାଏ । ସମୟ ଗଡ଼ିଗଲେ ବିଷ ମସ୍ତିଷ୍କ ଓ ସ୍ନାୟୁକୁ ଆକ୍ରମଣ କରି ରୋଗୀକୁ ଅଚେତ କରି ପକାଏ । ହାତ ଗୋଡ଼ ଛଟପଟ ହୁଏ । ଆଖି ଦୃଷ୍ଟି ସ୍ଥିର ହୋଇଯାଏ ଏବଂ ଶେଷରେ ବାତ ମାରେ । ସାପ କାମୁଡ଼ାର ୭ ଘଣ୍ଟାଠାରୁ ୪୮ ଘଣ୍ଟା ମଧ୍ୟରେ ରୋଗୀ ମରିଯାଏ ।

ଯେଉଁମାନଙ୍କର ଏହି ସମୟ ମଧ୍ୟରେ ମୃତ୍ୟୁ ହୁଏନାହିଁ ସେମାନେ ପରବର୍ତ୍ତୀ କାଳରେ ଅନ୍ୟାନ୍ୟ ଜଟିଳତା ଭୋଗ କରନ୍ତି । ସେମାନଙ୍କର ବୃକକ୍ କାମ କରେ ନାହିଁ । ସେଥିରୁ ଅଧିକାଂଶ କୋଷ ନଷ୍ଟ ହୋଇଯାଏ । ଫଳରେ ପରିସ୍ରା ବନ୍ଦ ହୋଇଯାଏ କିମ୍ବା ଖୁବ୍ କମ୍ ପରିସ୍ରା ହୁଏ । ସେଥିପାଇଁ ଚିକିତ୍ସା ନ କଲେ ରୋଗୀ ବୃକକ୍ ଶିଥିଳତାରୁ ମୃତ୍ୟୁ ବରଣ କରେ ।

Digitized by PPRACHIN, SOA

ଅଣ୍ଡ କେତେକ କ୍ଷେତ୍ରରେ ରକ୍ତ ଧମନୀ ଭିତରେ ଜମାଟ ବାନ୍ଧିଯାଏ ଏବଂ ଯକୃତ, ହୃତପିଣ୍ଡ, ମସ୍ତିଷ୍କ ଭଳି ଗୁରୁତ୍ୱପୂର୍ଣ୍ଣ ଅଙ୍ଗଗୁଡ଼ିକ ରକ୍ତ ଅଭାବରୁ କାର୍ଯ୍ୟକ୍ଷମ ହୋଇପାରନ୍ତି ନାହିଁ । ଏଣୁ ଏହା ଏକ ପ୍ରଧାନ ମୃତ୍ୟୁର କାରଣ ।

ପୁଣି ଅନ୍ୟ ଏକ ପ୍ରକାର ଜଟିଳତା ହେଲା କାମୁଡ଼ା ସ୍ଥାନ ପଚିବା ଓ ଗଳିବା । କାମୁଡ଼ା ସ୍ଥାନ ପଚିଯାଏ, କଳାପଡ଼ିଯାଏ, ଛୋଟ ଛୋଟ ଫୋଟକାରୁ ଘା ବଢ଼ି ବଢ଼ି ଯାଏ ଏବଂ ଅଙ୍ଗଟି ଶୁଖିଯାଏ । କେତେକ କ୍ଷେତ୍ରରେ ଏହି କାମୁଡ଼ା ସ୍ଥାନରେ ପୂଜ କରୁଥିବା ଜୀବାଣୁମାନେ ପଶି ଏହାକୁ ସାଂଘାତିକ କରି ଦିଅନ୍ତି । ଏହି କାରଣରୁ ହାତ ଗୋଡ଼ରେ ଘା ହୋଇଗଲେ କାଟିବା ଦରକାର ପଡ଼ିଥାଏ ।

ନାଗ ସାପ କାମୁଡ଼ାର ଲକ୍ଷଣ ଅଲଗା ପ୍ରକାର । ଏହା ମୁଖ୍ୟତଃ ମସ୍ତିଷ୍କ ଓ ସ୍ନାୟୁ ଅଙ୍ଗାଳି ଉପରେ ତୀବ୍ର ଅସର ବିସ୍ତାରଇ । କାମୁଡ଼ିଥିବା ସ୍ଥାନରେ ବିଶେଷ କିଛି ଫୁଲା ଯା ହୁଏନାହିଁ । କିନ୍ତୁ ଝିମ୍ ଯନ୍ତ୍ରଣା ଅନୁଭୂତ ହୁଏ ଏବଂ ଏ ଯନ୍ତ୍ରଣା ସ୍ନାୟୁପଥେ ବ୍ୟାପିଯାଏ । ତାପରେ ଦଶ ପନ୍ଦର ମିନିଟ୍ ମଧ୍ୟରେ ବିଷ ସ୍ନାୟୁପଥେ ଶେଷରେ ରୋଗୀକୁ ଘୂମ ଲାଗେ । କଥା କହି ପାରେନାହିଁ । ପାଟି ଫେଣମାନ ହୁଏ । ସ୍ନାୟୁବିକଳ ହୋଇ ଗୋଡ଼ ଏବଂ ଦେହ ପଡ଼େ । ସାଂଘାତିକ ହେଲେ ରୋଗୀ ଛିଡ଼ା ହୋଇ ପାରେନାହିଁ । ଲାଳ ଗିଳି ପାରେନାହିଁ, ପାଟିରେ ଲାଳ ଜମିଯାଏ । ଶ୍ୱାସ ପ୍ରଶ୍ୱାସ ନେବା ଅଧିକା କଷ୍ଟକର ହୋଇଯାଏ । ଅଣ୍ଟିପଡ଼ା ହୃତ୍‌ପିଣ୍ଡ । ଅଚିରେ ଶ୍ୱେତ ହୋଇଯାଏ । ନାଡ଼ୀର ଗତି ବଢ଼ିଯାଏ ଏବଂ ଶେଷରେ ଶ୍ୱାସକ୍ରିୟା ବନ୍ଦ ହୋଇ ରୋଗୀ ମୃତ୍ୟୁ ମୁଖରେ ପଡ଼େ ।

ସମୁଦ୍ର ସାପ ପ୍ରାୟ ସମସ୍ତେ ବିଷାକ୍ତ । ସମୁଦ୍ର ସାପ କାମୁଡ଼ିଲେ ମାଂସପେଶୀ ସବୁ ଅଧିକ ଯୋର ପକ୍ଷାଘାତ ହୁଏ । ଦେହରେ ଭିନ୍ନ ସ୍ଥାନରୁ ରକ୍ତସ୍ରାବ ହୁଏ । ପରିସ୍ରା ପରୀକ୍ଷା କଲେ ପରିସ୍ରାରେ 'ମାୟୋଗ୍ଲୋବିନ' ନାମକ ପଦାର୍ଥ ଥିବାର ଜଣାଯାଏ ।

## ଚିକିତ୍ସା—ବିଷାକ୍ତ ସାପ କାମୁଡ଼ାର ଚିକିତ୍ସା ବହୁମୁଖୀ ।

୧ । ପ୍ରକୃତ ବିଷାକ୍ତ ସାପ କାମୁଡ଼ିଛି କି ନାହିଁ ?

୨ । ସେଠି କାମୁଡ଼ିଛି ସେହି କାମୁଡ଼ା ସ୍ଥାନର ବିଷ ଦେହର ଅନ୍ୟ ସ୍ଥାନକୁ ରକ୍ତ ସଞ୍ଚାଳନ ଦ୍ୱାରା ନ ବ୍ୟାପେ ତାହାପାଇଁ ଚେଷ୍ଟା କରିବ । ଏଣୁ ଦେହରେ ବିଷ ବ୍ୟାପିବା ପ୍ରକ୍ରିୟାକୁ ମଧ୍ୟ ବିଳମ୍ବ କରାଯାଇପାରିବ । ସେଥିପାଇଁ ଉପାୟ ପ୍ରୟୋଗ କରିବ ।

Digitized by PPRACHIN, SOA

୩ । କାମୁଡ଼ା ସ୍ଥାନରେ ବରଫକୁ ଘଷ୍ଟ କରିବାକୁ ଚେଷ୍ଟା କରିବ ।

୪ । ରକ୍ତ ସଞ୍ଚାଳନରେ ପଶିଥିବା ବିଷକୁ ମଧ୍ୟ ନଷ୍ଟ କରିବାକୁ ହେବ । ସେଥିପାଇଁ ସାପ ବିଷ ପ୍ରତିଷେଧକ ପଲିଭାଲେଣ୍ଟ ଏଣ୍ଟିଭେନମ୍ ବ୍ୟବହୃତ ହୋଇଥାଏ ।

୫ । ଚେତନା ହରାଇବା ପାଇଁ ଅନୁଷଙ୍ଗିକ ଜଟିଳତାର ପ୍ରତିକାର ପାଇଁ ଆବଶ୍ୟକସ୍ଥ ଔଷଧ ବ୍ୟବହାର କରିହେବ । ଏହି ସବୁ କଥାକୁ ସୁକ୍ଷ୍ମ ଦଅଣ ଭଳି ଚିକିତ୍ସା କରିଥାଏ ।

## ପ୍ରାଥମିକ ଚିକିତ୍ସା

ହାତରେ କିମ୍ବା ଗୋଡ଼ରେ ସାପ କାମୁଡ଼ିଥିଲେ ଯଥାଶୀଘ୍ର ୧୦ ମିନଟ ମଧ୍ୟରେ କାମୁଡ଼ା ଉପରକୁ ଓ ତଳକୁ ଦୁଇଟି ଫିତା ଟାଣି କରି ବାନ୍ଧି ଦେବା ଭଲ, ଯେପରି ରକ୍ତ ସଞ୍ଚାଳନ ଭଲ ହେବ ନାହିଁ । ରୋଗୀକୁ ଖଟରେ ଶୁଆଇ ଦେବ । ଆବଶ୍ୟକ ହେଲେ ଗୋଟିଏ ଚଦର ଘୋଡ଼ାଇ ଦେବ । ନାକ ପାଟିରୁ ଲାଳ ବାହାରିଲେ ଲାଳ ପୋଛି ଦେବ । ଭୟ ନ କରିବାକୁ ଆଶ୍ୱାସନା ଦେବ । ବାନ୍ତି ଲାଗିଲେ ମୁହଁ କଡ଼େଇ ଦେବ । କ୍ଷୀର ବାର୍ଲି ଆଦି ଗରମ ପାନୀୟ ପିଇବାକୁ ଦେବ ।

ବାନ୍ଧିଥିବା ଫିତା ଅଧଘଣ୍ଟାରୁ ବେଶୀ ରହିଲେ କାମୁଡ଼ା ସ୍ଥାନକୁ ରକ୍ତ ସଞ୍ଚାଳନ ବନ୍ଦ ହୋଇଯାଏ, ଫଳରେ ମାଂସପେଶୀ ସବୁ ମରିଯିବାର ସମ୍ଭାବନା ଅଛି । ତେଣୁ ପ୍ରତି ଅଧ ଘଣ୍ଟାରେ ଉପର ଫିତାକୁ ଅଳ୍ପ ସମୟ ପାଇଁ ଖୋଲିଦେଲେ ସେ ସ୍ଥାନକୁ ନୂତନ ରକ୍ତ ଆସିଯିବ । ରକ୍ତ ସଞ୍ଚାଳନ ଅପେକ୍ଷା ଲସିକା ପ୍ରବାହର ଅଧିକ ବିଷ ଯାଉଥିବାରୁ ଫିତା ବନ୍ଧା ବିଷକୁ ଉପରକୁ ନ ଉଠିବାରେ ସାହାଯ୍ୟ କରେ । ମୁହଁର ଦେହରେ କାମୁଡ଼ିଲେ ଫିତା ବନ୍ଧା କିଛି ସାହାଯ୍ୟ କରେ ନାହିଁ । ଯଦି ସଙ୍ଗେ ସଙ୍ଗେ ବିଷ ଚିକିତ୍ସା ପାଇଁ ପଲିଭାଲେଣ୍ଟ ଏଣ୍ଟିଭେନମ ମିଳିଯାଏ ତେବେ ଏ ଫିତା ବାନ୍ଧିବା ଦରକାର ନାହିଁ ।

ଯଦି କାମୁଡ଼ାର ପନ୍ଦର ମିନଟ ମଧ୍ୟରେ ବିଷ ଭଟା ଇଞ୍ଜେକ୍ସନ ନ ମିଳେ ତେବେ ଫିତା ବନ୍ଧା ସରିଲେ ଏବଂ ସାପ କାମୁଡ଼ା ସ୍ଥାନକୁ ଡେଟଲ କିମ୍ବା ସାବୁନରେ ପରିଷ୍କାର କରି ଧୋଇ ଦେବ । ସିଅର ହେବା ବ୍ଲେଡ଼କୁ ଗରମ ପାଣିରେ ୫ ମିନଟ ସିଝାଇ ତାହା ଦ୍ୱାରା କାମୁଡ଼ା ସ୍ଥାନକୁ କାଟିଦେବ ।

Digitized by PPRACHIN, SOA

ଏହି କଟା ସିଧା ଏକ ସେଣ୍ଟିମିଟର ପର୍ଯ୍ୟନ୍ତ ଲମ୍ବା ଏବଂ ଅଧା ସେଣ୍ଟିମିଟର ପର୍ଯ୍ୟନ୍ତ ଗଭୀର ହେବା ଆବଶ୍ୟକ । ଅଜ୍ଞାତରେ କାମୁଡ଼ା ସ୍ଥାନକୁ ସିଧା ନ କାଟି ଅନ୍ୟତ୍ର କାଟିଲେ ଶିରା, ଧମନୀ କଟିଯିବାର ସମ୍ଭାବନା ଅଛି ।

ପାଟି ଭିତରେ ଘା'ଘଷା ନଥିଲେ ପାଟି ସାହାଯ୍ୟରେ ଏହି ରକ୍ତକୁ ଶୀଘ୍ର ଶୋଷି ନେଇ ବାହାରି ପକାଇବା ଉଚିତ । ସାପ ବିଷ ମୁଖ୍ୟତଃ ପ୍ରୋଟିନ । ଏହା ପେଟକୁ ଗଲେ ହଜମ ହୋଇଯାଏ । କେବଳ ରକ୍ତରେ ମିଶିଲେ ବିଷ ପ୍ରତିକ୍ରିୟା ସୃଷ୍ଟି କରେ । ଗୁଣିଆମାନେ ଏହିଭଳି କରି ଲୋକଙ୍କୁ ଦେଖାଇଥାନ୍ତି । ଏଭଳି ନ କଲେ ମା'ମାନଙ୍କର କ୍ଷୀର ଉତାରିବାବେଳେ ଯେଉଁଭଳି ରବର ପମ୍ପ ବ୍ୟବହାର କରାଯାଏ ସେ ପମ୍ପ ଆଣି ସେଥିରେ ବିଷ ମିଶା ରକ୍ତ ଶୋଷି ଆଣିବା ଉଚିତ । ବିଷ କାଟିବା ଇଞ୍ଜେକସନ୍ ନ ମିଳିବା ପର୍ଯ୍ୟନ୍ତ ପ୍ରତି ୩୦ ମିନିଟରେ ଏହିଭଳି ପାଞ୍ଚ ମିନିଟ ପର୍ଯ୍ୟନ୍ତ ରକ୍ତ ଶୋଷିବା ଉଚିତ । ବୋଡ଼ାକାମୁଡ଼ା ପାଇଁ ଉକ୍ତ ଶୋଷିବା ସବୁ ଉପକାରୀ ଚିକିତ୍ସା । ଏଥିରେ ପଦ୍ମ ସାପ ବିଷ କାମୁଡ଼ା ସ୍ଥାନରୁ ବାହାରିଯାଏ । ଇଞ୍ଜେକସନ୍ ମିଳିଗଲେ ଏପରି କରିବାର କୌଣସି ଆବଶ୍ୟକତା ନଥାଏ ।

## ପଲିଭାଲେଣ୍ଟ ଆଣ୍ଟିଭେନନ୍ ଓ ନିର୍ଦ୍ଦିଷ୍ଟ ଆଣ୍ଟିଭେନନ୍

ଭେନମ୍ ଏକ ଇଂରାଜୀ ଶବ୍ଦ । ଏହାର ଅର୍ଥ ବିଷ । ତେଣୁ ଆଣ୍ଟିଭେନମ୍ ଶବ୍ଦର ଅର୍ଥ ବିଷ ନିରୋଧକ । ପଲିଭାଲେଣ୍ଟ ହେଲେ ଅର୍ଥ ନାଗ, ବୋଡ଼ା, ଚିତି, ପ୍ରଭୃତି ସବୁ ସାପର ବିଷ ନିରୋଧକ । ଏଥିରେ ଅଛି, ନିର୍ଦ୍ଦିଷ୍ଟ ବିଷ ନିରୋଧକ ଔଷଧରେ କେବଳ ଗୋଟିଏ ସାପର ବିଷ ନିରୋଧକ ଥାଏ । ସାପ ଚିହ୍ନିବା କଷ୍ଟ ହୋଇଥିବାରୁ ପଲିଭାଲେଣ୍ଟ ଆଣ୍ଟିଭେନମ୍ ବ୍ୟବହାର କରିବା ଉଚିତ । ଆମ ରାଜ୍ୟରେ ମୁଖ୍ୟତଃ ପଲିଭାଲେଣ୍ଟ ବିଷ ନିରୋଧକ ହିଁ ମିଳିଥାଏ ।

ସୁସ୍ଥ ଘୋଡ଼ାମାନଙ୍କୁ ବିଷାକ୍ତ ସାପ କାମୁଡ଼ାଇ ସେମାନଙ୍କ ରକ୍ତରେ ବିଷ ପ୍ରତିରୋଧୀ ଶକ୍ତି ସୃଷ୍ଟି କରାଯାଏ । ସେମାନଙ୍କର ରକ୍ତ ପରୀକ୍ଷା କରି ଯେତେବେଳେ ଦେଖାଯାଏ ଯେ, ଏହି ଶକ୍ତି ଅଧିକ ହେଲାଣି ସେତେବେଳେ ଘୋଡ଼ା-ମାନଙ୍କ ଦେହରୁ ରକ୍ତ ସଂଗ୍ରହ କରାଯାଏ । ଏହି ରକ୍ତରୁ ରକ୍ତ କଣିକା ସବୁ ବୈଜ୍ଞାନିକ ଉପାୟରେ କାଢ଼ି ନିଆଯାଏ ଏବଂ ବଳିଥିବା ଜଳୀୟ ଅଂଶ 'ସିରମ୍'କୁ ଶୁଖାଇ ଆବଶ୍ୟକସ୍ଥଳେ ବିଷ ନିରୋଧକ ରୂପେ ବ୍ୟବହାର କରାଯାଏ । ଏହି ଔଷଧର ଗୁଣ

ରକ୍ତରେ ଏହା ମିଶିଲା ପରେ ବିଷ ଆପେ ଆପେ ନାଶ ହୋଇ ଏଥିରେ

Digitized by PPRACHIN, SOA

କଟିଗାସନ୍ତ ଓ ଶରୀର ସ୍ୱତନ୍ତ୍ରତା ବଢ଼ାଇ ଦିଅନ୍ତି । ଫଳରେ ଶରୀରର କୌଣସି କ୍ଷତ ହୁଏନାହିଁ । କିନ୍ତୁ ଏ ପ୍ରକାର ସ୍ଥାନୀୟ ପଦାର୍ଥ ବ୍ୟବହାରରେ ଅନେକଙ୍କର 'ଗ୍ୟାଙ୍ଗ୍ରିନ୍' ହେବାର ସମ୍ଭାବନା ଥାଏ । ତେଣୁ ଏହିପରି ଔଷଧ ବ୍ୟବହାର କରିବା ପୂର୍ବରୁ ରୋଗୀକୁ ପରୀକ୍ଷା କରି ସେ ଏହା ନେଇ ପାରିବ କି ନାହିଁ ବୋଲି ସ୍ଥିର କରାଯାଏ ।

ଏହି ଆଣ୍ଟିଭେନମ୍ ଇଞ୍ଜେକ୍ସନ୍ ମାଧ୍ୟମରେ ଶିରାରେ ଦିଆଯାଏ ଓ କାମୁଡ଼ା ସ୍ଥାନରେ ମାଂସପେଶୀରେ ଦିଆଯାଇଥାଏ । ଏହି ଇଞ୍ଜେକ୍ସନ୍ ୨୫ ସି.ସି. ଆମ୍ପୁଲରେ ପାଉଡର ଆକାରରେ ଥାଏ ଏବଂ ଏଥିରେ ପାଣି ମିଶାଇବା ପାଇଁ ୧୦ ସି.ସି. ମିଶାଇ ଇଞ୍ଜେକ୍ସନ ତିଆରି କରାଯାଏ ।

କାମୁଡ଼ା ଓ ବିଷକ୍ରିୟାର ଗାମ୍ଭୀର୍ଯ୍ୟତା ଦେଖି ୨୦ ସି.ସି.ରୁ ୧୦୦ ସି.ସି. ପର୍ଯ୍ୟନ୍ତ ଇଞ୍ଜେକ୍ସନ୍ ପ୍ରାରମ୍ଭରେ ଦିଆଯାଇଥାଏ । ନାଗସାପ କାମୁଡ଼ାରେ ଆରମ୍ଭରେ ୧୦୦ ସି.ସି. ଇଞ୍ଜେକ୍ସନ ଶିରାରେ ଓ ୧୦ ସି.ସି. ଇଞ୍ଜେକ୍ସନ୍ କାମୁଡ଼ା ସ୍ଥାନରେ ଚାରିପାଖେ ଦେଇଦେବା ଉଚିତ । ତାହା ପରେ ମଧ୍ୟ ସେହି ଚିକିତ୍ସା । ଦରକାର ପଡ଼ିଲେ ୮ ଘଣ୍ଟାରେ ଏହା ପୁଣି ଥରେ ଦିଆଯାଇପାରେ ।

ପ୍ରାୟ ସବୁ ଅବସ୍ଥାରେ ବାର ବର୍ଷରୁ ସାନ ପିଲାମାନଙ୍କୁ ବଡ଼ମାନଙ୍କଠାରୁ ବୟସ ଅନୁପାତର କମ୍ ପରିମାଣ ଔଷଧ ଦିଆଯାଏ । ସାପ କାମୁଡ଼ାରେ ସେପରି କରିବା ଅନୁଚିତ । କାରଣ ପିଲାର ଓଜନ କମ୍ ହୋଇଥିବାରୁ ସାପ ବିଷ ତାକୁ ଶୀଘ୍ର ମାରିଦେବାର ସମ୍ଭାବନା ଅଛି । ତେଣୁ ଏ କ୍ଷେତ୍ରରେ ଅଷ୍ଟ ବର୍ଷା ପିଲା ଦେହରେ ଶୀଘ୍ର ପ୍ରଭାବ ପକାଉଥିବାରୁ ସେମାନଙ୍କୁ ୧୦୦ ସି.ସି.ରୁ ଅଧିକ ଆଣ୍ଟିଭେନମ୍ ପ୍ରାରମ୍ଭରେ ଦେଇଦେବା ଉଚିତ । ସେହିପରି ଗର୍ଭାବସ୍ଥାରେ ଏହି ପଦ୍ଧତିରେ ସାପ ବିଷ ପ୍ରତିଷେଧକ ଔଷଧ ଦିଆଯାଏ । ସୁବିଧା ହେବା ଲାଗି ସବୁ ସ୍ଥାନ ନିକଟରେ ଏଥିରୁ ପାଞ୍ଚ ଦଶ ଆମ୍ପୁଲ ରଖିବା ଆବଶ୍ୟକ ।

## ବିଶେଷ ଚିକିତ୍ସା

ଏହି ସବୁ ଚିକିତ୍ସା କଲାପରେ ବି ରୋଗୀ ଲକ୍ଷଣରୁ ମୁକ୍ତ ନ ହୁଏ ତାକୁ ବିଶେଷ ଚିକିତ୍ସା କରିବା ଦରକାର ପଡ଼ିଥାଏ ।

—o—

Digitized by PPRACHIN, SOA

# ସାହିତ୍ୟ ଓ ସଂସ୍କୃତିରେ ସାପ

ପ୍ରାଚୀନ କାଳରେ ଜଙ୍ଗଲବାସୀଙ୍କର ବନ୍ୟଜନ୍ତୁମାନଙ୍କ ପ୍ରତି ଗଭୀର ପ୍ରେମ ଓ ଶ୍ରଦ୍ଧା ରହିଥିଲା । ଏଣୁ ବନ୍ୟପ୍ରାଣୀମାନେ ଆମ ଦୈନନ୍ଦିନ ଜୀବନକ୍ଷେତ୍ରରେ ଓତପ୍ରୋତ ମିଶିରହି ଥିଲେ । ସେମାନଙ୍କର ଭୂମିକା ଥିଲା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ । ଜୀବର କ୍ରମବିକାଶ ପର୍ଯ୍ୟାୟ ହେଉ, କାଳକ୍ରମ ବା ଜ୍ଞାନସୂତ୍ର ହେଉ, ସେଥିରେ ମଣିଷ ପଶୁପକ୍ଷୀ ଓ ସରୀସୃପମାନେ ସମାନ ଅଂଶୀଦାର ବୋଲି ଜୀବବିଜ୍ଞାନୀମାନେ ଗବେଷଣା କରି ଜାଣିଛନ୍ତି । ବରଂ ଜୀବଜନ୍ତୁମାନେ ଯେ ମାନବସୃଷ୍ଟିରେ ପାଦେ ପଛୁଆ ଏହା ଏବେ ସ୍ୱୀକୃତ ।

ସିଂହ, ବ୍ୟାଘ୍ର, ହସ୍ତୀ ଓ ଶୃଗାଳ ପ୍ରଭୃତି ବନ୍ୟଜନ୍ତୁମାନେ ଭାରତର ପ୍ରାଚୀନ କାବ୍ୟ ଶାସ୍ତ୍ର, ପୁରାଣ ଓ ଧର୍ମ ଧାରଣାରେ ଯେପରି ଉଲ୍ଲେଖନୀୟ ଭୂମିକା ରଖିପାରିଛନ୍ତି । 'ସର୍ପ' ମଧ୍ୟ ସେହିପରି ଏକ ସ୍ୱତନ୍ତ୍ର ଆସନର ଅଧିକାରୀ । ଆମର ପ୍ରାଚୀନ ଧର୍ମଶାସ୍ତ୍ର ଦର୍ଶନ ଓ ସଂସ୍କୃତିରେ ସର୍ପର ଭୂମିକା ଯେପରି ଚମତ୍କାର ସେହିପରି ଉଲ୍ଲେଖଯୋଗ୍ୟ ।

ଗୋଟିଏ ପ୍ରାଚୀନ ଶ୍ଳୋକରୁ ୯ଟି ନାଗସାପ ବିଷୟରେ ଜଣାଯାଏ ଓ ଏମାନଙ୍କୁ ପ୍ରତ୍ୟହ ସକାଳ ଓ ସନ୍ଧ୍ୟାରେ ସ୍ମରଣ କରିବା ଉଚିତ । ବିଶେଷତଃ ସକାଳେ ସ୍ମରଣ କଲେ ଆଜି ଦିନସାରା ବିଷଧର ସର୍ପଦ୍ୱାରା ଆକ୍ରାନ୍ତ ହେବାର ଭୟ ନଥାଏ ବୋଲି ବିଶ୍ୱାସ । ସେହି ୯ ନାଗ ହେଲେ—ଅନନ୍ତ, ବାସୁକି, ଶେଷ, ପଦ୍ମନାଭ, କମ୍ବଳ, ଶଙ୍ଖପାଳ, ଧୃତରାଷ୍ଟ୍ର, ତକ୍ଷକ ଏବଂ କାଳୀୟ ।

ମହାଭାରତ ଓ ପୁରାଣର ପୃଷ୍ଠା ସବୁ ସର୍ପ କିମ୍ବଦନ୍ତୀ ଓ ସର୍ପ କାହାଣୀରେ ପୂର୍ଣ୍ଣ । ନଳ-ଦମୟନ୍ତୀ ଗଳ୍ପରେ ଆମେ ଦେଖୁ ଯେ, ନଳ (ଯାହାଙ୍କର ହୃଦୟରେ ପରେ କଳି ପ୍ରବେଶ କରିଥିଲେ । ଗୋଟିଏ ବଣାଗ୍ନି ଦେଖିଲେ ଓ ସେ ଯାଉଥିବାବେଳେ ବାଟରେ ସେଠାରୁ 'କର୍କୋଟକ' ନାମକ ଏକ ସର୍ପକୁ ଭେଟିଲେ ।

Digitized by PPRACHIN, SOA

ନାରଦଙ୍କ ଦ୍ୱାରା ଅଭିଶାପ ଗ୍ରସ୍ତ ସେହି 'କର୍କୋଟକ' ନାଗଙ୍କ ଅଗ୍ନିଦଗ୍ଧରୁ ସେ ମୁକ୍ତ ହେବାରୁ ସେ ନଳ କପଟ ଦେବଙ୍କ ପଞ୍ଜରରୁ ମୁକ୍ତ ପାଇବେ ତାହାର ସନ୍ଧାନ ଦେଇଥିଲେ । ଦମୟନ୍ତୀଙ୍କୁ ଲାଭକରିବା ସହ ପୁନଃରାଜ୍ୟ ଫେରିପାଇବାର ମାର୍ଗ ମଧ୍ୟ ବତାଇ ଦେଇଥିଲେ ।

ସର୍ପ ମାନଙ୍କର ରାଜ୍ୟ ଏହି ପୃଥ୍ୱୀ ତଳ ବୋଲି କୁହାଯାଏ । ସେହି 'ପାତାଳପୁର'ରେ ସୁନ୍ଦରୀ ନାଗକନ୍ୟାମାନେ ବାସ କରୁଥାନ୍ତି । ଅର୍ଜୁନ ନାଗରାଜାଙ୍କ କନ୍ୟା ଉଲୁପୀଙ୍କୁ ବିବାହ କରିଥିଲେ । ଭୀମ ଦୁର୍ଯ୍ୟୋଧନଙ୍କ ଦ୍ୱାରା ବିଷପାନରେ ଗଙ୍ଗା ଜଳରେ ବୁଡ଼ି ବୁଡ଼ି ସର୍ପମାନଙ୍କ ରାଜ୍ୟରେ ପହଞ୍ଚି ସେଠାରେ ଜୀବନ ପାଇଥିଲେ ।

ପ୍ରାଚୀନ ଚିତ୍ରଶାସ୍ତ୍ର ଓ ଜନଶ୍ରୁତି ଗୁଡ଼ିକରେ ସର୍ପ ଏକ ଭୟଙ୍କର ପରିବେଶ ଓ ପ୍ରତିହିଂସାପରାୟଣ ଜୀବ ରୂପେ ଚିତ୍ରିତ । ସର୍ପର ଗୁଣଗାନ ସହସ୍ର ମୁଖରେ ଧ୍ୱନିତ ।

'ସର୍ପ ପ୍ରମାଣ ଭୟଙ୍କର
ଦୁର୍ଜନ ଜନେ ପରଚର ।'

ସର୍ପ ବାହାର କଲା ଓ ଟୋ'ର ପ୍ରତିଧ୍ୱନି ଏବେ ମଧ୍ୟ ଲୋକ ମୁଖରେ ରହିଛି । ସର୍ପ କୁମ୍ଭୀର ହେବା ଅର୍ଥ କେବଳ ତାହାର ଚେହେରାକୁ ବହୁଗୁଣିତ କରିବା । ସର୍ପର ହାବଭାବକୁ କେନ୍ଦ୍ରକରି ଗଢ଼ି ଉଠିଥିବା ଭାଷାର ବର୍ଣ୍ଣନା ରହିଛି ମଧ୍ୟ ଏମ ସାହିତ୍ୟ ସୃଷ୍ଟିକୁ ଉଦ୍ଦୀପ୍ତ କରିଛି । ଭଗବାନଙ୍କ 'ସର୍ପଶୟନ' ଏହାର ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ । ତଥା ରଥ ଯାତ୍ରାରେ ଜଗନ୍ନାଥଙ୍କୁ 'ତାଳସର୍ପ' ଅର୍ପଣ ହୋଇ ଅନୁମାନ ହୋଇ ସମ୍ବୋଧନ ତଥା ସର୍ପ ଓ ଜଗନ୍ନାଥଙ୍କ ମଧ୍ୟରେ ଏକ ସାମଞ୍ଜସ୍ୟ ସ୍ୱରୂପ ସହ ବର୍ଣ୍ଣନା କରାଯାଇଛି । ସର୍ପ ସାଧାରଣତଃ ଚକ୍ରୀ, କୁଣ୍ଡଳୀ, ପାଦ,ବୃକ୍ଷ ଚାଳୋଦର, ଚକ୍ଷୁଶ୍ରବା, ଭୋଗୀ (ଫଣ'କୁ ଭୋଗ କୁହାଯାଏ) ନାମରେ ପରିଚିତ ଥିବାରୁ ଜଗନ୍ନାଥ ସେ ଚକ୍ରୀ ଏବଂ ଉପାଳ ଓ ଚକ୍ରାବତାପୂର୍ଣ୍ଣ ।

ଅଥର୍ବ ବେଦରେ ମୂଳକଧ ସ୍ୱରେ ବର୍ଣ୍ଣୋଳ୍କୁ ଅଜଗର ସହ ତୁଳନା କରାଯାଇଛି । 'ଗୀତା'ରେ ଦୁଇପ୍ରକାର ଅର୍ଥର ଉଲ୍ଲେଖ ଦେଖାଯାଏ— ସର୍ପ ଓ ନାଗ । ସର୍ପମାନଙ୍କ ଭିତରେ 'ବାସୁକି' ଓ ନାଗଙ୍କ ମଧ୍ୟରେ 'ଅନନ୍ତ' ଶ୍ରେଷ୍ଠ

Digitized by PPRACHIN, SOA

ରୂପେ ବର୍ଣ୍ଣିତ । ଶିବଙ୍କ ସଙ୍ଗେ ସଦା ସଂଶ୍ଳିଷ୍ଟ । ତନ୍ତ୍ର 'କରେସତାରସ୍ୱ ନିବେଦନାୟ' ରୂପେ ସମ୍ବୋଧନ କରାଯାଇଛି । ଶୀରବର୍ଷଣାରୀ ବସ୍ତୁ ସଦା ବଜ୍ର ମଣ୍ଡଳ ଧାମ (ସହସ୍ର ଦଳାବଛିନ୍ନ) ହର୍ଙ୍କ କୋଳରେ ଶାୟିତ । କାଳିଦାସଙ୍କ 'ଉତ୍ତରମେଘ'ର ୪୧ ଶ୍ଳୋକରେ ଏହାର ଏକ ସୁନ୍ଦର ଉଲ୍ଲେଖ ଅଛି । ପ୍ରିୟା ବିରହବ୍ୟଥିତ ଯକ୍ଷ କହୁଛନ୍ତି—

ଶେଷ ଶଯ୍ୟାରୁ ଶାରଙ୍ଗଧର
ଉଠିବେ ଯେବେ
ଜାଣିବା ନ ପ୍ରିୟେ, ଅଭିଶାପ ମୋର
ତୁଟିବ ତେବେ ।

(ମେଘଦୂତ-ଅନୁବାଦ ରାଧାମୋହନ ଗଡ଼ନାୟକ)

ତନ୍ତ୍ରର କୁଣ୍ଡଳିନୀ ବା କୁଳକୁଣ୍ଡଳିନୀ ବା ସର୍ପଶକ୍ତି ସର୍ବଶକ୍ତିମାନ ପୁରୁଷଙ୍କ ସହ ସର୍ବ ମଧ୍ୟ ସଂଶ୍ଳିଷ୍ଟ । ଏହ ମନୋବୈଜ୍ଞାନିକଙ୍କର ଯୁକ୍ତିରେ ହୋଇ ଶୋଇଥିବା ଏକ ସର୍ପର କୁଣ୍ଡଳୀ-ସହ ସାଦୃଶ୍ୟ ରହିଛି । ଏହ କୁଣ୍ଡଳୀ ଶକ୍ତି ଧୀରେ ଧୀରେ ତାଙ୍କ ମଥା ଉଠାଇ ଓ ଲମ୍ବା ସୃଷ୍ଟି ପାଇଁ ପ୍ରସାରିତ ହୁଅନ୍ତି ।

ସଂସ୍କୃତରେ ଏବା 'ଓଁ' ବତୁ ଅର୍ଥ ଶକ୍ତି ଓ ଉଦ୍ଦୀପିତ । ତନ୍ତ୍ରରୁ ବୋଝିବାର ଅର୍ଥ ହେଉଛି ଯେ—'ଓଁ'ର ଦୁଇଟି ସ୍ୱର ଅଛି । 'ଓ'ର ଉପରେସ୍ଥ ଅର୍ଦ୍ଧବୃତ୍ତ ଓ ମଝିରେ ବିନ୍ଦୁ ଚନ୍ଦ୍ର ଓ ଉଦ୍ଗତ କୋଟିଏ ତନ୍ତ୍ରୋକ୍ତ ଶୋଇଥିବା ସର୍ପ ସଦୃଶ । ଏହ ରହସ୍ୟ ସବୁ ଓଁର ଭିନ୍ନ ଭିନ୍ନ ଅର୍ଥ ମଧ୍ୟ ଗବେଷକମାନେ କରିଥାନ୍ତି । ବେଦେତ କହନ୍ତି 'ଓଁ'ର ବିନ୍ଦୁ (Dot) ଚନ୍ଦ୍ର ବିନ୍ଦୁ ବା ପରମ ବ୍ରହ୍ମ ସନାତନ ପୁରୁଷ ଏବଂ ତଳ ଅଂଶ ଶକ୍ତି ବା ଚିରନ୍ତନ ଶକ୍ତି । ସେହି ଅଂଶଟି କୁଣ୍ଡଳୀ ସର୍ପ ଠାରୁ ଏହ ବିନ୍ଦୁ ବୃତ୍ତକୁ ଅଲଗା କରି ଦେଉଛି, ତାହା ହେଉଛି କୂଳ ବା ସୀମାରେଖା (Boundary line) ଯେଉଁ ଶକ୍ତିର ଅନ୍ତକୁ କୂଳ କୁଣ୍ଡଳିନୀ ପାଇଲେ । ବାସ୍ତବ ତାଙ୍କ ଦେହି ଜାଣିପାରିଲେ ସେ ଭୀମ ଦେଖନ୍ତି ତାଙ୍କ ନ ଉଠନ୍ତି ନାଥ, କୁଣ୍ଡଳିନୀଙ୍କ ମୁଖ ।

ଦ୍ୱାପର ଯୁଗରେ କୃଷ୍ଣଙ୍କର କାଳୀୟଦଳନ କାହାଣୀ ଏକ ପ୍ରେମାଖ୍ୟାନର ଅଧ୍ୟାୟ । ଦର୍ପିଲା ମୂଷର ସର୍ପର ଫଣାଙ୍କରେ ବାଳକୃଷ୍ଣଙ୍କ ନୃତ୍ୟରେ ବଂଶୀର ଦଣ୍ଡଦେବ ଜ୍ଞାନୀ ରମଣୀ ପାଇ ଦେବାକୁ ଲାଗିଲେ କୋଟିଏ ସାପ ହିଁ ତାହାର ଫଣା ଉତ୍ତର ଦେଇ ଶିଶୁ କୃଷ୍ଣଙ୍କ ରକ୍ଷା କରିଛି । ଏହା ଜଣାଶୁଣା ସମୁଦ୍ର ମନ୍ଥନ' ଅନ୍ୟ ଏକ ଦୃଷ୍ଟି ଆକର୍ଷଣୀୟ ଅଧ୍ୟାୟ ଥିଲା । ସର୍ପଙ୍କ ବାସୁକି ଏହ ମନ୍ଥନ ରଜ୍ଜୁରେ

Digitized by PPRACHIN, SOA

ମେଷରୁ ଉଦକ ରୂପକ ଶ୍ୱେତର ଦର୍ଶନ୍ତି ହୋଇଥିଲା । କୃଷ୍ଣଙ୍କ ବଡ଼ଭାଇ ବଳରାମ ଶେଷଙ୍କ ଅବ ପ୍ରାଣ ତ୍ୟାଗ କଲେ, ଭାଗବତ ଅନୁ—ସାରେ ସେ ମୁହଁରୁ ଗୋଟିଏ ବଡ଼ ଧଳା ସାପ ବାହାର ହୋଇଥିଲା । ଏହାର ଶ୍ୱେତ ପଦ୍ମ ଫଣା ଓ ଏହି ସର୍ପ ଭୂତଳତଟରେ ପଡ଼ାଇ ଗାଳ ପୃଥିବୀରେ ଏକା ଭିନ୍ନ ଭିନ୍ନ ନାମରେ ଅସଂଖ୍ୟ ସର୍ପ, ବରୁଣ ଦେବତା ଓ ସୁତୀର୍ଥ ନଦୀମାନଙ୍କ ସହ ମିଳିତ ହୋଇଥିଲା ।

ଆମ ଜନଶ୍ରୁତି କଥା, ଧର୍ମ ଧାରଣା ଓ ଲୋକକାହାଣୀ ସହିତ ସର୍ପ ମଧ୍ୟ ସଂଯୁକ୍ତ । ଭାରତର ସବୁ ଅଞ୍ଚଳରେ ନାଗପଞ୍ଚମୀ ପାଳିତ ହୁଏ ।

ସୂର୍ଯ୍ୟଙ୍କ ରଥରେ ପ୍ରତି ମାସରେ ଯେଉଁ ୭ ଜଣ ଭ୍ରମଣ କରନ୍ତି, ସେମାନଙ୍କ ମଧ୍ୟରେ ଗୋଟିଏ ଗୋଟିଏ ସୂର୍ଯ୍ୟବଂଶିତ ସର୍ପ ଭ୍ରମଣ କରୁଥିବାର ଏକ ବର୍ଣ୍ଣନା ଶ୍ରୀ ବିଷ୍ଣୁ ପୁରାଣରେ ଦେଖିବାକୁ ମିଳେ । ବାରମାସର ସେହି ସର୍ପମାନେ ହେଲେ— ମଧୁମାସ ଚୈତ୍ରରେ 'ବାସୁକି' ବୈଶାଖରେ କଚ୍ଛନୀର, ଜ୍ୟେଷ୍ଠରେ ତକ୍ଷକ, ଆଷାଢ଼ରେ ନାଗ, ଶ୍ରାବଣରେ 'ଏଲାପତ୍ର' ଭାଦ୍ରବରେ ଶଙ୍ଖପାଳ, ଆଶ୍ୱିନରେ ଧନଞ୍ଜୟ, କାର୍ତ୍ତିକରେ ଐରାବତ, ମାର୍ଗଶିରରେ ମହାପଦ୍ମ, ପୌଷରେ କର୍କୋଟକ ମାଘରେ କମ୍ବଳ ଓ ଫାଲ୍‌ଗୁନରେ ଅଶ୍ୱତର ।

ଆମ କଳା ସ୍ଥାପତ୍ୟ ଓ ଗୁମ୍ଫା ଚିତ୍ର ଗୁଡ଼ିକରେ ମଧ୍ୟ ସାପମାନେ ସ୍ଥାନ ପାଇଛନ୍ତି । ଅଜନ୍ତାର ୧୯ ନମ୍ବର ଗୁମ୍ଫାରେ ସପ୍ତଫଣିର ବେଷ୍ଟିତ ଏକ ନାଗରାଜାଙ୍କ ଚିତ୍ର ଦେଖାଯାଏ । ସାଞ୍ଚିସ୍ତୂପର ଗୋଟିଏ ତୋରଣରେ ପଞ୍ଚଫଣିର ବେଷ୍ଟିତ ଏକ ନାଗଙ୍କ ଉଦ୍ୟାନରେ 'ନାଗରାଜା' ବିହାର କରୁଥିବାର ଚିତ୍ର ଅଛି ସ୍ପଷ୍ଟ । ସାଞ୍ଚିର ଅନ୍ୟ ଏକ ସ୍ତୂପରେ ବୁଦ୍ଧ ଦେବତାଙ୍କର ପ୍ରତିନିଧିତ୍ୱ କରୁଥିବା ଚୈତ୍ୟବୃକ୍ଷ ବୃକ୍ଷତାରରେ ଫଣା ଟେକି ଶୋଇଥିବା ଏକ ନାଗସାପର ଚିତ୍ର ଦେଖାଯାଏ ।

ଅଧିକନ୍ତୁ ମହାଭାରତ ବେଦବେଦ ପଣ୍ଡିତ ସହିତ ସୂର୍ଯ୍ୟ ଓ ସର୍ପ ପୂଜା ଆମର ଏକ ପ୍ରାଚୀନ ପରମ୍ପରା । ସେମାନଙ୍କ ମତାନୁଯାୟୀ ସର୍ପ ଉପାସନା ଏକ ପବିତ୍ର କାର୍ଯ୍ୟ, କାରଣ ବହୁ ଲୋକଙ୍କର ବିଶ୍ୱାସ ଯେ ସର୍ପ ଓ ଭକ୍ତ ବା ଭକ୍ତମାନଙ୍କର ମୂଳବଂଶ ସୂର୍ଯ୍ୟଙ୍କ ଠାରୁ ଉତ୍ପନ୍ନ । ତନ୍ତ୍ରର ଲୋକଙ୍କ ମତାନୁଯାୟୀ ନାଗଙ୍କ ମୁଣ୍ଡ ସଂଖ୍ୟା ୫କୁ ହାତରେ ଥିବା ୫ ଅଙ୍ଗୁଳି ସହ ମେଳ କରାଯାଇପାରେ ।

ଅନେକତାଙ୍କିର ଉପସଂହାର ବର୍ତ୍ତମାନ ଆମର ପୂର୍ବ ପୁରୁଷ ମାନଙ୍କ ଭକ୍ତି ଓ ସ୍ମୃତିରେ ଭରପିବା ଉଚିତ ।

ପୃଥିବୀ ସ୍ୱରୂପେ ଭ୍ରମଣଶୀଳ, ଆକାଶ ମଣ୍ଡଳରେ ସ୍ୱର୍ଗ ରାଜ୍ୟରେ ଅନ୍ତରୀକ୍ଷରେ ଶର ଲୁପ ବୃକ୍ଷ ଅଧାରେ ଅଛନ୍ତି ବର୍ଗ ମଧ୍ୟରେ ସ୍ୱର୍ଗର ଉତ୍କଳ ପଥରେ, ସୂର୍ଯ୍ୟଙ୍କ କିରଣ ରଶ୍ମିରେ ଓ ଜଳ ଗର୍ଭରେ ଥିବା ଅସଂଖ୍ୟ ସର୍ପମାନଙ୍କୁ ନମସ୍କାର ।

Digitized by PPRACHIN, SOA

# ଭାରତୀୟ ସଂସ୍କୃତିରେ ନାଗ

କେବଳ ଏକ ଅନାଦ୍ୟମାନ ଭାରତୀୟ ମାନବ ନାନାବ ଧର୍ମୀୟ ଚେତନାରେ ପଶୁ ଉପାସନା ପ୍ରଚଳନ ହୋଇ ଆସୁଛି, ତାହା ଐତିହ୍ୟ କହିବା ବାହୁଲ୍ୟ । କେବେ ସେ ଯା' ହେଉନା କାହିଁକି, ପ୍ରାଗୈତିହାସିକ ଯୁଗରେ ସେତେବେଳେ ମଣିଷର ମୌଳିକ ପରିଚନ୍ଦ୍ରା ଅପି ନଥିଲା, ସେତେବେଳେ ସେ ସ୍ୱୟଂ ମନୁଷ୍ୟେତର ପ୍ରାଣୀମାନଙ୍କୁ ନିଜଠାରୁ ଅଧିକ ଶକ୍ତିଶାଳୀ, ଚତୁର ଓ ରହସ୍ୟମୟ ବିବେଚନା କରିଥିଲା । ସମସ୍ତ ପ୍ରକାର ଜୀବଜନ୍ତୁଙ୍କ ମଧ୍ୟରେ ସର୍ପ ହିଁ ଥିଲା ତାର ବିଶେଷ ଆକର୍ଷଣ । ପାଦ-ପକ୍ଷବିହୀନ ଏ ରହସ୍ୟମୟ ପ୍ରାଣୀର କ୍ଷିପ୍ର ଗତି ଏବଂ, ଅପି ଶୃଙ୍ଖଳାରେ ଉତ୍ତର ଦେବା କୌଶଳ, ତା ଆକର୍ଷଣୀୟ ଶାରୀରିକ ଗଠନ ଓ ବିଷୋପଲବ୍ଧ ଏହାର କାଳଦଂଶନ ଆଦିମ ମାନବର ମନ ଓ ଚେତନାରେ ଗଭୀର ଆତଙ୍କ ସୃଷ୍ଟି କରିବା ସହିତ ଭୟ ସଞ୍ଚାର କରିଥିଲା । ଏଇଠି ହିଁ ଉପାସନା ସର୍ପ ଉପାସନାର ମୂଳ ଉତ୍ସ ।

ପୃଥିବୀର ପ୍ରାଚୀନତମ ଓ ବହୁଳ ପ୍ରଚଳିତ ଧର୍ମୋପାସନା ମଧ୍ୟରେ ସର୍ପ ଉପାସନା ଅନ୍ୟତମ । ଭାରତ ସମେତ ଏହା ପାରସ୍ୟ, ଆରବ, ମିଶର, ଗ୍ରୀସ, ଇଟାଲି, ମେକ୍ସିକୋ, ପେରୁ, ଆମେରିକା, ଚୀନ, ଜାପାନ, ସିଂହଳ ଆଦି ଦେଶରେ ପ୍ରଚଳିତ ହେବାର ପ୍ରମାଣ ମିଳେ । ମାତ୍ର ଭାରତ ବ୍ୟତୀତ ପୃଥିବୀର ଅନ୍ୟ କୌଣସି ଦେଶରେ ଏହା ଯେତେ ବ୍ୟାପକ ଓ ଲୋକପ୍ରିୟ ହୋଇପାରି ନାହିଁ ।

ଭାରତରେ ସର୍ବପ୍ରଥମେ ଅଣଆର୍ଯ୍ୟ ଗୋଷ୍ଠୀମାନଙ୍କ ମଧ୍ୟରେ ନାଗ ପୂଜା ପ୍ରଚଳିତ ହୋଇଥିବାର ସୂଚନା ମିଳେ । ଏଠାରେ ଉଲ୍ଲେଖ ଆର୍ଯ୍ୟଗୋଷ୍ଠୀଙ୍କ ଭାରତ ପ୍ରବେଶ ହେବାପରେ ଏମାନଙ୍କର ସାଂସ୍କୃତିକ ଭାବଧାରା ଓ ଧର୍ମଗତ ଚେତନା ଧାରାରେ ବ୍ୟାପକ ପରିବର୍ତ୍ତନ ଆସିଥିଲା । ଏହାର ଫଳସ୍ୱରୂପ ଆର୍ଯ୍ୟାର୍ଯ୍ୟ ବୈଦିକ ଧର୍ମ ସହିତ ସମେତ ନାଗ ଉପାସନା ଆର୍ଯ୍ୟ ପରମ୍ପରାରେ ସ୍ଥାନ ପାଇଲା ।

ମହେଞ୍ଜୋଦାରୋର ଧ୍ୱଂସସ୍ତୂପରୁ ପ୍ରାପ୍ତ କେତେକ ମୋହରରେ ଅର୍ଦ୍ଧ ମାନବ ଓ ଅର୍ଦ୍ଧ ପଶୁ ରୂପ ପରିକଳ୍ପିତ 'ନାଗ' ଚିହ୍ନ ଉତ୍କୀର୍ଣ୍ଣ ହୋଇଥିବାର ଦେଖାଯାଏ । ତେବେ ଏଠାରେ 'ନାଗ' କୌଣସି ଏକ ଦେବତାଙ୍କ ପ୍ରତୀକ ରୂପେ ଉପସ୍ଥ

Digitized by PPRACHIN, SOA

ହୋଇଛି । ଏଥିରୁ ପ୍ରମାଣ ମିଳୁଛି ଯେ, ପ୍ରାୟ ପଞ୍ଚହଜାର ବର୍ଷ ପୂର୍ବରୁ ପ୍ରାଚୀନ ଭାରତୀୟମାନଙ୍କ ଧର୍ମୀୟ ଚେତନାରେ ସର୍ପ ସଂଶ୍ଳିଷ୍ଟ ହୋଇସାରିଥିଲା ।

ଋଗ୍‌ବେଦରେ ସର୍ପ କେତେବେଳେ ଦୈତ୍ୟ ତ ପୁଣି କେତେବେଳେ ଦେବତା ରୂପେ ଚିତ୍ରିତ ହୋଇଛି । ଅର୍ଥାତ୍ ଦେବତା ଇନ୍ଦ୍ର ତାଙ୍କର ଏକ ଶକ୍ତିଶାଳୀ ଶତ୍ରୁ ଦୈତ୍ୟ ଅହିବୃତ୍ରଙ୍କୁ ବଧ କରି 'ଅହି-ହନ' (ସର୍ପହନ୍ତା) ଉପାଧି ଗ୍ରହଣ କରିଥିଲେ । ପୁନଶ୍ଚ ଅହିବୁଧ୍ନ୍ୟ ରୂପେ ସର୍ପ ଦେବତାର ସମ୍ମାନ ପ୍ରାପ୍ତ କରିଥିଲା । ସଙ୍କେତ ମିଳେ ଯେ, ବୈଦିକକାଳର ଆର୍ଯ୍ୟମାନଙ୍କୁ ଏକ ସର୍ପ ଉପାସକ ସମ୍ପ୍ରଦାୟ ଅନାର୍ଯ୍ୟ ଗୋଷ୍ଠୀ ସହିତ ଯୁଦ୍ଧ କରିବାକୁ ପଡ଼ିଥିଲା ।

ଋଗ୍‌ବେଦ ରଚନା କାଳକୁ ଆର୍ଯ୍ୟମାନେ ସର୍ପକୁ ପୂଜା କରିବାର ସ୍ୱୀକୃତି ପ୍ରଦାନ କରିଥିଲେ । ଅଥର୍ବବେଦରେ ସର୍ପମାନଙ୍କୁ ଦେବଜନ (ଦେବତା) ରୂପେ ସମ୍ମାନିତ କରାଯାଇଛି । ମାତ୍ର ଏହାର ଅନ୍ୟ କେତେକ ସ୍ଥାନରେ ସର୍ପଭୟର ସମୂହ ଧ୍ୱଂସ ସାଧନପାଇଁ ପ୍ରକାର ସ୍ତୁତି କରିଛନ୍ତି । ଏହି ଗ୍ରନ୍ଥରେ ଅସିତ, ସ୍ୱଜ, ବଭ୍ରୁ, ତ୍ରିରାଜି, କଙ୍କପର୍ବନ, ତୈରଶ୍ଚ, ଉପତୃଣ୍ୟ, ତୈମାତ, ଅପୋଦକ ଆଦି ସର୍ପ ଦେବତାଙ୍କ ନାମୋଲ୍ଲେଖ ରହିଛି ।

'ଗୃହ୍ୟସୂତ୍ର' ଗ୍ରନ୍ଥରେ ସ୍ପଷ୍ଟ ସମସ୍ତଙ୍କୁ ସର୍ପ ଉପାସନା ଆର୍ଯ୍ୟ ଧର୍ମର ଏକ ବିଶିଷ୍ଟ ଅଙ୍ଗରୂପେ ସ୍ୱୀକୃତ ପାଇବା ଓ ଏଥନିମିତ୍ତ ନାନା ଉତ୍ସବ ପ୍ରଚଳନ କରାଗଲା । ଅଶ୍ୱଳାୟନ ଓ ପାରସ୍କର ଗୃହ୍ୟସୂତ୍ରରେ ଚଣ୍ଡାଳୀ ନାମକ ସ୍ଥଳେ ସର୍ପଦେବତାଙ୍କ ଉପାସନା କରିବେ ସେଥିପାଇଁ ନାନା ପରାମର୍ଶ କରାଯାଇଛି । ଏଥିରୁ ପ୍ରମାଣ ମିଳେ ଯେ, ଖ୍ରୀ. ପୂ. ଷଷ୍ଠ ଶତାବ୍ଦୀରୁ ଖ୍ରୀ. ପୂ. ଚତୁର୍ଥ ଶତାବ୍ଦୀ (ସୂତ୍ରଯୁଗ) ମଧ୍ୟରେ ସର୍ପ ବା 'ନାଗ' ଉପାସନାର ବହୁଳ ପ୍ରସାର ଘଟିଥିଲା ।

ରାମାୟଣ ଓ ମହାଭାରତରେ ସର୍ପମାନଙ୍କୁ ଦେବତ୍ୱର ସମ୍ମାନ ଦିଆଯାଇଛି । ସେମାନେ 'ରସାତଳରେ ବାସ କରନ୍ତି । ସେଠାରେ ସୁନାରେ ମଣି ଖଚିତ ନାଗ 'ଶେଷ' ଅନନ୍ତନାଗର ପୃଥିବୀକୁ ଟେକି ରଖିଛି । ଏ ହେଉଛି କଦ୍ରୁ ମାତାରୁ ଜାତ ନାଗ ସନ୍ତାନ । ନାଗମାନେ ସାଧାରଣତଃ କ୍ରୋଧୀ ଓ ବିଷଯୁକ୍ତ । ସେମାନେ ଗୁପ୍ତଧନର ରକ୍ଷକ । ସର୍ପାସ୍ୟ ସମ୍ପତ୍ତି ଓ ସନ୍ତାନ ପ୍ରଦାନକାରୀ ଅଟନ୍ତି । ସ୍ୱୀୟ ମାୟାଶକ୍ତି ବଳରେ ଯେ କୌଣସି ରୂପରେ ସେମାନେ ପରିବର୍ତ୍ତିତ ହୋଇପାରନ୍ତି ।

Digitized by PPRACHIN, SOA

ଏତଦ୍ ବ୍ୟତୀତ, ଭାଗବତ ଓ ମହାଭାରତ ଗୋଷ୍ଠୀମଧ୍ୟରେ ଏଭଳି ସନ୍ଦର୍ଭର ଅନେକ କାହାଣୀ ଦୃଷ୍ଟ ସାହିତ୍ୟର ପୃଷ୍ଠାମଣ୍ଡନ କରିଥାଏ । ନାଗ ତକ୍ଷକ ଦ୍ୱାରା ରାଜା ପରୀକ୍ଷିତଙ୍କ ମୃତ୍ୟୁ ଘଟଣା ଅଧିକାଂଶ ସମସ୍ତେ ଜାଣନ୍ତି । ପିତାଙ୍କ ମୃତ୍ୟୁର ପ୍ରତିଶୋଧ ନେବାପାଇଁ ଜନ୍ମେଜୟ ସର୍ପଯଜ୍ଞ ଆରମ୍ଭ କଲେ ମାତ୍ର ଜରତ୍କାରୁଙ୍କ ଋଷିପୁତ୍ର ଆସ୍ତିକଙ୍କ ହସ୍ତକ୍ଷେପ ଯୋଗୁଁ ନାଗକୁଳ ଅଟନ୍ତ ଧ୍ୱଂସ ମୁଖରୁ ରକ୍ଷା ପାଇଥିଲେ । ପାଠକେ, ସ୍ମରଣ କରିବେ, ନାଗରାଜ ତକ୍ଷକ ଓ ତାଙ୍କ ପୁତ୍ର ଅଶ୍ୱସେନ ବାସ କରୁଥିବା 'ଖାଣ୍ଡବ'କୁ ଧ୍ୱଂସ କରିବା ପାଇଁ ଅଗ୍ନିଦେବତାଙ୍କୁ ଶ୍ରୀକୃଷ୍ଣ ଓ ଅର୍ଜୁନ ସାହାଯ୍ୟ କରିଥିଲେ । ଏହାର ପ୍ରତିଶୋଧ ନେବା ପାଇଁ ତକ୍ଷକଙ୍କ ପୁତ୍ର ଅଶ୍ୱସେନ ମହାଭାରତ ସମରରେ ଗୋଟିଏ ଶର ରୂପେ କର୍ଣ୍ଣଙ୍କ ତୂଣୀର ମଧ୍ୟକୁ ପ୍ରବେଶ କରିଥିଲେ, ଅର୍ଜୁନଙ୍କୁ ହତ୍ୟା କରିବାପାଇଁ ।

ସମସ୍ତ ନାଗ ଯେ କ୍ରୂର, କ୍ରୋଧୀ ଓ ଭୟଙ୍କର ପ୍ରକୃତିର ଥିଲେ ତା ନୁହେଁ । 'ନାଗଶେଷ'ଙ୍କ କଥା ଉଦାହରଣ । କଦ୍ରୁ ଓ କାଶ୍ୟପଙ୍କ ଔରସରେ ପୁତ୍ର ମଧ୍ୟରୁ ଜ୍ୟେଷ୍ଠ 'ନାଗଶେଷ, ବା ଶେଷ ନାଗ' ତାଙ୍କ ଭାଇମାନଙ୍କଠାରୁ ସ୍ୱତନ୍ତ୍ର ହୋଇ ଅଷ୍ଟସିଦ୍ଧି ତପସ୍ୟାରେ ମନୋନିବେଶ କରି ଅଦ୍ଭୁତ ଶକ୍ତି ଅର୍ଜନ କଲେ । ତାଙ୍କ ତପସ୍ୟାରେ ପ୍ରୀତ ହୋଇ ବ୍ରହ୍ମା ଗୋଟିଏ ବର ପ୍ରଦାନ କରିଥିଲେ । ପୃଥିବୀ ତଳେ ଅବସ୍ଥାନ କରି ଶେଷନାଗ ନିଜ ମସ୍ତକ ଉପରେ ପୃଥିବୀକୁ ଟେକି ରଖିବ ।

ରାମାୟଣରେ ଶେଷନାଗଙ୍କୁ ପ୍ରଜାପତିମାନଙ୍କ ମଧ୍ୟରୁ ଜଣେ ବୋଲି ସ୍ୱୀକାର ଅଛି । କୃଷ୍ଣଙ୍କ ଜ୍ୟେଷ୍ଠ ଭ୍ରାତା ବଳରାମ ହେଉଛନ୍ତି, ଶେଷନାଗଙ୍କ ଏକ ଅବତାର । ପୌରାଣିକ ଆଖ୍ୟାନ ଅନୁସାରେ, ମୃତ୍ୟୁ ସମୟରେ ବଳରାମଙ୍କ ଆତ୍ମା ସର୍ପ ରୂପ ଧରି ମୂର୍ଦ୍ଧା ମଧ୍ୟ ଦେଇ ଘଟ ତ୍ୟାଗ କରିଥିଲା । ବଳରାମଙ୍କ ମସ୍ତକ ଉପରେ ସପ୍ତଫଣା ନାଗଯୁକ୍ତ ବହୁତ ସ୍ୱରୂପର ମୂର୍ତ୍ତି ପ୍ରାନ୍ତରୁ ଉପଲବ୍ଧ ହୋଇଛି ।

କାଳୀୟ ନାଗ ଉପରେ କୃଷ୍ଣଙ୍କ ବିଜୟ ପ୍ରଶଂସାତ୍ମକ ସତେ ଆଦିମ ନାଗ ଧର୍ମ ଉପରେ କୃଷ୍ଣ ଭାଗବତ ଧର୍ମର ବିଜୟ ବ୍ୟତୀତ ଅନ୍ୟ କିଛି ନୁହେଁ । ପରବର୍ତ୍ତୀ ସମୟରେ ଏହି ଦୁଇ ସଂପ୍ରଦାୟ ମଧ୍ୟରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ସମ୍ପର୍କ ପ୍ରତିଷ୍ଠିତ ହୋଇଛି । ବୈଷ୍ଣବ ନାଗ ପରମ୍ପରାକୁ ଶାସ୍ତ୍ରୀୟ ମର୍ଯ୍ୟାଦା ପ୍ରଦାନ କରାଯାଇଛି । ହରିବଂଶରେ ବର୍ଣ୍ଣିତ ଅଛି, କଂସ ରାଜାଙ୍କ ଦୂତ ଅକ୍ରୂର ନାଗ ଅନନ୍ତଙ୍କୁ ଭକ୍ତି-ନୈବେଦ୍ୟ ଅର୍ପଣ କରିଥିଲେ । ବ୍ରଜରୁ ଫେରିବା ବାଟରେ କୃଷ୍ଣ ଓ ବଳରାମ ତାଙ୍କ

Digitized by PPRACHIN, SOA

ଅବତରଣ କରୁଥିଲେ । ଯମୁନା କୂଳରେ ଅକ୍ରୂର ରଥରୁ ଓହ୍ଲାଇ ଜଳ ମଧ୍ୟରେ ସ୍ନାନ ପୂର୍ବକ ଅର୍ଘ୍ୟ ଦାନର ଉଦ୍ୟମ କରୁଥିଲେ । ଜଳ ମଧ୍ୟରେ ଥାଇ ସେ ଦେଖିଲେ ଅନନ୍ତ ନାଗ କୋଳରେ ଶୟନ ଶ୍ରୀକୃଷ୍ଣଙ୍କୁ । ଏ ଦୃଶ୍ୟ ବାରମ୍ବାର ଦେଖାଯିବାରୁ ଅକ୍ରୂରଙ୍କ ମନରେ ଧାରଣା ଦୃଢ଼ୀଭୂତ ହୋଇଥିଲା ଯେ କୃଷ୍ଣ ହେଉଛନ୍ତି ସେହି ଅନନ୍ତଶାୟୀ ଭଗବାନ ବିଷ୍ଣୁଙ୍କ ଅବତାର । ଏ ଉପାଖ୍ୟାନଟି ଭାରତର ବୈଷ୍ଣବ ଧର୍ମ ଓ ନାଗ ଧର୍ମ ମଧ୍ୟରେ ଏକ ସମ୍ପର୍କକୁ ସୂଚାଉଛି ।

ବୈଷ୍ଣବ ଧର୍ମ ବ୍ୟତୀତ, ଶୈବ, ବୌଦ୍ଧ ଜୈନ ଆଦି ଧର୍ମ ଭିତରେ ନାଗ ପରମ୍ପରା ଅଙ୍ଗାଙ୍ଗୀ ଭାବେ ଜଡ଼ିତ ।

ଅନ୍ୟ ପୌରାଣିକ ଦେବତା ଗଣେଶ ଶିବଙ୍କ ପୁତ୍ର ନାଗ ସମ୍ପର୍କ ଅଛି । ଖ୍ରୀ.ପୂ ଦ୍ୱିତୀୟ ଶତକର କେତେକ ମୁଦ୍ରାରେ ଗଣେଶ ପାର୍ଶ୍ୱରେ ନନ୍ଦୀ ଓ ଅନ୍ୟ ପାର୍ଶ୍ୱରେ ସର୍ପ ଚିହ୍ନ ଖୋଦନ ହୋଇଥିବାର ଦେଖାଯାଏ । କେତେକ ଅନ୍ୟ ମୁଦ୍ରାରେ ଗଣେଶ ପାର୍ଶ୍ୱରେ ନନ୍ଦୀ ଓ ଅନ୍ୟ ପାର୍ଶ୍ୱରେ ନାଗ ଚିହ୍ନ ବିଦ୍ୟମାନ । ଏହା ନାଗ ଓ ଶୈବଧର୍ମ ଭିତରେ ରହିଥିବା ନିବିଡ଼ ସମ୍ପର୍କକୁ ସୂଚିତ କରେ । ଏହା ସର୍ବଜନବିଦିତ । ପ୍ରତ୍ୟେକ ଶିବାଳୟରେ ନାଗ ଏକତ୍ର ପୂଜା ପାଏ । ଏପରିକି କେତେକ କ୍ଷେତ୍ରରେ ଶିବ ଅପେକ୍ଷା ମନସାଙ୍କୁ ନାଗ ଦେବୀ ପୂଜା ପାଏ । ଭାରତୀୟ ବିଖ୍ୟାତ ନାଗେଶ୍ୱର ମନ୍ଦିର ଓ ନାଗେଶ୍ୱର ମହାଦେବ ମନ୍ଦିରରେ ଶିବଙ୍କୁ ନାଗ ରୂପେ ପୂଜା କରାଯାଏ ।

ବୌଦ୍ଧଧର୍ମ ଓ ଜୈନଧର୍ମର ପ୍ରତିଷ୍ଠାତା ଗୌତମ ବୁଦ୍ଧ ଓ ମହାବୀରଙ୍କ ଜୀବନର ଘଟଣା ପ୍ରବାହରେ ନାଗମାନେ ଓତପ୍ରୋତ ଭାବେ ଜଡ଼ିତ । ବୌଦ୍ଧ କିମ୍ବଦନ୍ତୀ ଓ ବୌଦ୍ଧ ଗ୍ରନ୍ଥରେ ନାଗ ରାଜାମାନଙ୍କୁ ଶାକ୍ୟ ମୁନିଙ୍କ ପରମ ଉପାସକ ରୂପେ ଚିତ୍ରଣ କରାଯାଇଛି । କିମ୍ବଦନ୍ତୀରେ ଗୌତମ ବୁଦ୍ଧ ଭୂମିଷ୍ଠ ହେବା ପରେ ନନ୍ଦ ଓ ଉପନନ୍ଦ ନାଗଦ୍ୱୟ ତାଙ୍କୁ ପ୍ରଥମ ସ୍ନାନ କରାଇଥିଲେ । ସେ ସ୍ଥାନେ ବୁଦ୍ଧ ତପସ୍ୟାମଗ୍ନ ଥିବାବେଳେ ପଞ୍ଚ ପ୍ରଲୋଭନର ଦେବତା 'ମାର' ତାଙ୍କ ସାଧନା ଭଙ୍ଗ କରିବା ପାଇଁ ପ୍ରବଳ ଚେଷ୍ଟା କରିଥିଲେ, ମାତ୍ର ନାଗରାଜ 'ମୁଚଳିନ୍ଦ' ସେଠାରେ ପହଞ୍ଚି ଶାକ୍ୟମୁନିଙ୍କ ମସ୍ତକ ଉପରେ ସ୍ୱୀୟ ଫଣା ବିସ୍ତାର କରି ସୁରକ୍ଷା ପ୍ରଦାନ କରିଥିଲେ । ବୁଦ୍ଧଙ୍କ ପରି ଜୈନ ପଥେ ତାଙ୍କ ତୀର୍ଥଙ୍କରଙ୍କ ଜୀବନରେ ସମ ସ୍ଥାନ ଠାରେ ନିର୍ମିତ ସ୍ତୂପକୁ ନାଗ ମାନେ ଜଗି ରହୁଥିଲେ । ଭରହୁତର କୋ-ଣାର୍କରେ ନାଗରାଜ ଏରାପଥ ଶିଳ୍ପ ବୃକ୍ଷ ମୂଳେ ଥାଇ ବୁଦ୍ଧଙ୍କୁ ବନ୍ଦନା କରୁଥିବା ଦୃଶ୍ୟ ଅବତାରଣା କରାଯାଇଛି ।

Digitized by PPRACHIN, SOA

ଜୈନ ପାର୍ଶ୍ୱନାଥଙ୍କ ମସ୍ତକ ଉପରେ ନାଗ ଫଣାର ଚାନ୍ଦୁଆ ମୂର୍ତ୍ତି ଅନେକ ସ୍ଥାନରେ ଦେଖାଯାଏ । ଜୈନ ଧର୍ମଗ୍ରନ୍ଥ ଅନୁସାରେ ଥରେ ପାର୍ଶ୍ୱନାଥ ସମାଧିସ୍ଥ ଥିବା ସମୟରେ ଜଳ ପ୍ରଳୟର ଦେବତା 'କଠ' ତାଙ୍କ ତପସ୍ୟାରେ ବାଧାଜାତ ଝଡ଼ିବା ପାଣି ପ୍ରବଳ ବର୍ଷା ସାଙ୍ଗକୁ ବଜ୍ରପାତ କରନ୍ତେ ନାଗରାଜ ଧରଣ ବା ଧରଣେନ୍ଦ୍ର ସେଠାରେ ଉପସ୍ଥିତ ହୋଇ ତାଙ୍କ ଫଣା ଦ୍ୱାରା ପାର୍ଶ୍ୱନାଥଙ୍କୁ ସୁରକ୍ଷିତ ରଖିଥିଲେ । ସ୍ଥଳ ବିଶେଷରେ ନାଗମାନଙ୍କୁ ବର୍ଦ୍ଧମାନ ମହାବୀରଙ୍କ ଅନୁଚର ରୂପେ ଚିତ୍ରଣ କରାଯାଇଛି ।

ଭାରତୀୟ ସର୍ପ ବା ନାଗ ଉପାସନା ସମ୍ବନ୍ଧୀୟ ଅନେକ ଐତିହାସିକ ପ୍ରମାଣ ଉପଲବ୍ଧ ହୁଏ । ଆଲେକ୍‌ଜାଣ୍ଡର ଉତ୍ତରପଶ୍ଚିମ ଭାରତର ଅନେକ ନଗର ଉପରେ ଆକ୍ରମଣ କରିବା ସମୟରେ ଦେଖିଥିଲେ, ଅଧିକାଂଶ ସହରର ଅଧିବାସୀମାନେ ଜୀବନ୍ତ ସର୍ପକୁ ଗଡ଼ ମନେ କରି ଗୁମ୍ଫା ମଧ୍ୟରେ ପୂଜା କରୁଥିଲେ । । ଖ୍ରୀ.ପୂ. ତୃତୀୟ ଶତାବ୍ଦୀର ଭାରତରେ ସର୍ପ ଉପାସନା ପ୍ରଚଳନ ହୋଇଥିବାର ଯଥେଷ୍ଟ ପ୍ରମାଣ ଏଥିରୁ ମିଳୁଛି । ଖ୍ରୀ.ପୂ. ପଞ୍ଚମରୁ ଖ୍ରୀ.ପୂ. ଦ୍ୱିତୀୟ ଶତକ ମଧ୍ୟରେ ପ୍ରଚଳିତ ହୋଇଥିବା ଲକ୍ଷିତ ମୁଦ୍ରାରେ ସର୍ପ ଚିହ୍ନ ଦେଖାଯାଏ । ମାଳବ ଯୌଧେୟ ଆଦି ଗଣରାଜ୍ୟ ନାଗଙ୍କ ମୁଦ୍ରା ଓ କୌଶାମ୍ବୀ ଓ ତକ୍ଷଶିଳା ମୁଦ୍ରାରେ ସର୍ପ ଚିହ୍ନ ଖୋଦିତ ହୋଇଛି । ମଥୁରା ଓ ତକ୍ଷଶିଳା ଥିଲା ନାଗ ଉପାସନାର ପ୍ରଧାନ କେନ୍ଦ୍ର ଏବଂ ସେଠାରୁ ଅନେକ ନାଗ ମୂର୍ତ୍ତି ଓ ଶିଳା-ଲିପି ଆବିଷ୍କୃତ ହୋଇଛି । ଅଯୋଧ୍ୟାର ଶାସକ ବିଶାଖାଦେବ, ଧନଦେବ, ନରଦତ୍ତ ଆଦିଙ୍କ ମୁଦ୍ରାରେ ସର୍ପ ଚିହ୍ନ ବିଦ୍ୟମାନ । ଏହା ସର୍ପ ବା ନାଗପୂଜା ପ୍ରତି ସେମାନଙ୍କ ଭକ୍ତିକୁ ସୂଚିତକରେ ।

Digitized by PPRACHIN, SOA

# ନାଗପଞ୍ଚମୀ

ଶ୍ରାବଣ ଶୁକ୍ଳ ପଞ୍ଚମୀ ଦିନ ସାରା ଭାରତରେ 'ନାଗ' ପୂଜା କରୁଥିବାରୁ ତାହାକୁ 'ନାଗ ପଞ୍ଚମୀ' ନାମରେ ନାମିତ ହେଉଛି । ଏହି ଉତ୍ସବରେ ଜୀବନ୍ତ ନାଗସାପ, ନାଗମୂର୍ତ୍ତି, ନାଗଦେବତାଙ୍କ ଚିତ୍ରର ଅଧିକାଂଶ ସ୍ଥାନରେ ପୂଜା କରାଯାଏ । ଏହି ପୂଜା କିପରି ଆରମ୍ଭ ହେଲା ସେ ବିଷୟରେ ଏକ କିମ୍ବଦନ୍ତୀ ଶୁଣାଯାଏ ।

ଥରେ ଜଣେ ବ୍ରାହ୍ମଣ ନାଗପଞ୍ଚମୀ ଦିନ କ୍ଷେତରେ ହଳ କରୁଥିଲେ । ହଳ କରୁ କରୁ ଲଙ୍ଗଳ ମୁନରେ କେତୋଟି ଛୁଆ ନାଗସାପ ମରିଗଲେ । ନାଗୁଣୀ ତା ଘରକୁ ଫେରି ଦେଖିଲା ଯେ, ତା'ର ଛୁଆ ସବୁ ମରିଯାଇଛନ୍ତି । ଦୁଃଖରେ ଓ କ୍ରୋଧରେ ପ୍ରତିଶୋଧ ପରାୟଣ ହୋଇ ନାଗୁଣୀ ସେହି ସେହି ସେ ବ୍ରାହ୍ମଣ ଘରକୁ ଯାଇ ତାର ସମସ୍ତ ପରିବାରକୁ ମାରିଦେଲା । ପଡୋଶୀ ଗାଁରେ ସେ ବ୍ରାହ୍ମଣର ଗୋଟିଏ ଝିଅ ରହୁଥିଲା । ତାକୁ ବି ମାରିବାକୁ ନାଗୁଣୀ ବାହାରିଲା । ନାଗୁଣୀ ବ୍ରାହ୍ମଣ ଝିଅଘରେ ପହଞ୍ଚି ଦେଖିଲାବେଳକୁ ବ୍ରାହ୍ମଣ ଝିଅ ଚାଉଳରେ ସୁନ୍ଦର ସୁନ୍ଦର ନାଗର ଛବି ଆଙ୍କି ପୂଜା କରୁଛି । ଏହା ଦେଖି ନାଗୁଣୀ ବହୁତ ଖୁସି ହେଲା । କ୍ରୋଧ ଶାନ୍ତ ହୋଇ ତା ମନରେ ଦୟା ଆସିଲା । ସେ ତାକୁ ଦଂଶନ ନ କରି ବର ମାଗିବାକୁ କହିଲା । ବ୍ରାହ୍ମଣ ଝିଅ ତା'ର ପରିବାର ଲୋକଙ୍କୁ ବଞ୍ଚାଇ ଦେବାକୁ ନାଗୁଣୀକୁ ଅନୁରୋଧ କଲା । ନାଗୁଣୀ ବ୍ରାହ୍ମଣ ପରିବାରର ସମସ୍ତଙ୍କୁ ଜୀବନଦାନ ଦେଲା ଏବଂ କହିଲା—ଯିଏ ନାଗପଞ୍ଚମୀ ଦିନ ନାଗ ସାପଙ୍କୁ ପୂଜା କରିବ ତାକୁ ଧନ, ଜନ ଓ ଲକ୍ଷ୍ମୀ ପ୍ରାପ୍ତ ହେବ । ସେହିଦିନଠାରୁ ସାରା ଭାରତରେ ନାଗ ପଞ୍ଚମୀ ପାଳନ କରାଯାଉଛି ।

ଏହି ଦିନ ଉପବାସ କରି ସକାଳୁ ପୂଜା ଆରମ୍ଭ କରାଯାଏ । ନାଗମାନଙ୍କୁ ଦୁଗ୍ଧ କଦଳୀ ଖଇ ଧୂପ, ଦୀପ ଓ ନୈବେଦ୍ୟ ଅର୍ପଣ କରାଯାଏ । ଦେବୀ ମନସାଙ୍କୁ ମଧ୍ୟ ଏହି ଦିନ ପୂଜା କରାଯାଏ । ମନସା ସର୍ପରାଜ ବାସୁକୀ ରାଜାଙ୍କ ଭଉଣୀ । ସେ ସର୍ପଦଂଶନରୁ ରକ୍ଷା କରନ୍ତି ବୋଲି ବିଶ୍ୱାସ ରହିଛି । ନାଗ ପଞ୍ଚମୀ ପାଳନ ନେପାଳ ଓ ଉତ୍ତରାଞ୍ଚଳରେ ସ୍ୱଳ୍ପ ତାରତମ୍ୟ ଦେଖାଯାଏ ମଧ୍ୟ ଏହା ସାରା ଭାରତରେ ବହୁ ଆଦରର ସହିତ ପାଳିତ ହେଉଛି । ଏହି ଦେଶ ବା ଜାତି ହେଉ

ତତ୍କାଳୀନ ସମାଜରେ 'ନାଗ' ଜାତିର ଗୁରୁତ୍ୱ ସ୍ଥାନ ଅଧିକାର କରିଥିବା ଏହା ତାହାର ପ୍ରମାଣ ।

ଦକ୍ଷିଣ ଭାରତର କର୍ଣ୍ଣାଟକ ରାଜ୍ୟରେ ହିନ୍ଦୁ ରମଣୀମାନେ ପ୍ରଭାତରୁ ଶୁଦ୍ଧ ସୁଚି ସ୍ନାନ ସାରି ଫୁଲ, କଦଳୀ, ଚନ୍ଦନ ଓ ଦୁଗ୍ଧ ଧରି ଝାଇ ବୁଦା ପାଖରେ ଯାଆନ୍ତି । ସେମାନଙ୍କ ଧାରଣା ଉକ୍ତ ବୁଦାରେ 'ନାଗ' ଥାଆନ୍ତି । ଏହି ବୁଦା ମୂଳରେ ଫୁଲ, କଦଳୀ, ଚନ୍ଦନ ଇତ୍ୟାଦି ରଖି ତା' ଉପରେ ଦୁଗ୍ଧ ଢାଳନ୍ତି । ଦକ୍ଷିଣ ଭାରତର ଅନ୍ୟ କେତେକ ସ୍ଥାନରେ ହିନ୍ଦୁ ରମଣୀମାନେ ନାଗ ଦେବତାଙ୍କୁ ପୂଜା କରିବାକୁ ଯାଆନ୍ତି । ତାମିଲନାଡୁ ରାଜ୍ୟର କନ୍ୟାକୁମାରୀଠାରୁ ୨୦ କି.ମି. ଦୂରରେ ଅବସ୍ଥିତ ନାଗରକୋଏଲର ନାଗରାଜ ମୂର୍ତ୍ତି ଅତ୍ୟନ୍ତ ପ୍ରସିଦ୍ଧ । ପ୍ରଚଳିତ କଥାର ଅନୁସାରେ ଏଠାରେ ରବିବାର ଦିନ ଯଦି କେହି ପୂଜା କରେ ତେବେ ଅସାଧ ଚର୍ମ ରୋଗରୁ ସେ ଆରୋଗ୍ୟ ଲାଭ କରେ ।

ପଶ୍ଚିମ ବଙ୍ଗର ନାଗ ସନ୍ନ୍ୟାସୀମାନେ ଜୀବନ୍ତ ହୋଇ ଏକ ଦେବ ନାଗ ସାପକୁ ଦେହରେ ଗୁଡ଼ାଇ ସମୁଦ୍ର କୂଳକୁ ଯାଆନ୍ତି । ବିହାର ରାଜ୍ୟର ଏହି ଦଳ ଲୋକମାନେ ଡାଲା ଓ ମାଟିଆ ହାଣ୍ଡିରେ 'ସାପ ଦେବତା' ମୂର୍ତ୍ତି ରଖି ଜଗତର ଏଣେ ତେଣେ ବିତରଣ କରନ୍ତି । ଅସମ ରାଜ୍ୟ ଓଡ଼ିଶାରେ ମଧ୍ୟ ଏହି ପର୍ବ ପାଳନ କରାଯାଏ ।

ଉତ୍ତର ପ୍ରଦେଶରେ ହିନ୍ଦୁମାନେ କେବଳ ମଣିଷ କୃତ ସାପ ମୂର୍ତ୍ତି ପାଣିରେ ବିସର୍ଜନ କରନ୍ତି ଓ ପୁଅ ପିଲାମାନେ ଏହି ମୂର୍ତ୍ତିଗୁଡ଼ିକୁ ବାଡ଼େଇ ବାଡ଼େଇ ଭାଙ୍ଗି ଦିଅନ୍ତି । କେତେକ ହିନ୍ଦୁ ଧାତୁ ନିର୍ମିତ ନାଗ ମୂର୍ତ୍ତି ପାଣିରେ ଭସାଇଥାନ୍ତି ।

ପଞ୍ଜାବରେ ନାଗପଞ୍ଚମୀ ଦିନ କାନ୍ଥରେ ଗୋବର ମୂର୍ତ୍ତି କୋଠରେ ଅଙ୍କି ପୂଜା କରାଯାଏ । ପ୍ରଚଳିତ ବିଶ୍ୱାସ ଅନୁସାରେ ଯେଉଁଘରେ ଏ ମୂର୍ତ୍ତି ଥିବ ସେ ଘରେ ସାପ ପ୍ରବେଶ କରିବନାହିଁ ।

ମଧ୍ୟ ପ୍ରଦେଶରେ ଜବଲପୁରର ଦୂରରେ ସାପଗାତ ପାଖରେ ସର୍ପ ଦେବତା ମୂର୍ତ୍ତି ଅଙ୍କି ପୂଜା କରାଯାଏ । କେରଳର ପ୍ରାୟ ପ୍ରତ୍ୟେକ ପରିବାର ଘର ଅଗଣାର ଗୋଟିଏ କୋଣର ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ସର୍ପ ପୂଜା କରିଥାଆନ୍ତି ।

ଗୁଜୁରାଟର ପ୍ରାୟ ପ୍ରତ୍ୟେକ ଗ୍ରାମରେ ସାପମାନଙ୍କ ପାଇଁ ନିର୍ଦ୍ଦିଷ୍ଟ ଏକ ଶ୍ରେଷ୍ଠିଆ ମନ୍ଦିର ଅଛି ଏବଂ ଏଥିରେ ଅଧିଷ୍ଠିତ ଦେବତା ଗୋଟିଏ ଗୋଖର ସାପ

Digitized by PPRACHIN, SOA

ଅସ୍ଥି (Collumela auris) ଥାଏ । ଅର୍ଦ୍ଧକୋମଳାସ୍ଥି (Semi carti laginons) ଦ୍ୱାରା ଗଠିତ ଓ ଏହା ସ୍ତନ୍ୟପାୟୀ ପ୍ରାଣୀମାନଙ୍କର ଏହା ଶେଷ ହାଡ଼ ପର୍ଦ୍ଦା (ଷ୍ଟେପ୍) ସହ ଯୁକ୍ତ । ତେଣୁ ସାପ ଭୂମି ଉପରସ୍ଥ ସାମାନ୍ୟ କମ୍ପନ ଜାଣି ପାରେ । ଏଥିପାଇଁ ସପେରା ବନ ଜଙ୍ଗଲରେ ଯେ ବାଦ୍ୟ ବର୍ଣ୍ଣନ ଥିଲେ ବି ସାପ ଶୁଣିପାରେ । ତେଣୁ ସପେରା ସେ ସମୟରେ ଗୋଡ଼ରେ ବାଡ଼ି ବା ଠେଙ୍ଗା ନେଇ ଭୂମିକୁ ଆଘାତ କରି ଅର୍ଥାତ୍ ଠକ୍ ଠକ୍ ଶବ୍ଦର ଗିତର ଉଦ୍ଦେଶ୍ୟ ହେଉଛି ସାପଠାରୁ ଦୂରେଇ ରହିବ । କାରଣ ସାପ କେବଳ ଭୂମି ଉପରସ୍ଥ ଶବ୍ଦକୁ ବାରିପାରି ଥାଏ । ବାୟୁ ମଣ୍ଡଳୀସ୍ଥ ଶବ୍ଦକୁ ଆଦୌ ଜାଣିପାରି ନ ଥାଏ । ତେଣୁ ସାପ ଠେଙ୍ଗା ଶବ୍ଦରୁ ଜାଣି ଦୂରେଇ ଯାଇଥାଏ । ସାପ ବାଦ୍ୟ ଶବ୍ଦ ଜାଣି ନ ପାରିବାର ପ୍ରମାଣ ହେଉଛି ଯେ କେଉଁ ସପେରା ବଜାଉଥିବା ସମୟରେ ସାପ ମୁଣ୍ଡ ହଲାଇବାର ଆଦୌ ଦେଖାଯାଇ ନ ଥାଏ । ମାତ୍ର କେବଳ ଯେତେବେଳେ ହାତ ବା ଗୋଡ଼ ହଲାଉଥାଏ ସେତେବେଳେ ହିଁ ଫଣା ଟେକେ । ଅର୍ଥାତ୍ ସପେରା ବା ବଂଶୀର ଶବ୍ଦ ଏହା ବାରିପାରେ ନାହିଁ । ଏହାର ବାଦ୍ୟ ବାଦ୍ୟର ବର୍ଣ୍ଣନ ଅନୁଚିତ । କିନ୍ତୁ ଦୃଶ୍ୟ ଦୃଷ୍ଟି ଶକ୍ତି ହିଁ କାରଣ । ତେଣୁ ସାପ ଆଦୌ ବଧିର ନୁହେଁ ଓ ଏହାର ନଚାଇବା ହିଁ ଭୁଲ ।

## ସାପର ମଣି ?

ବିଶେଷତଃ ସାପ ମୁଣ୍ଡର ମଣି ଗୁପ୍ତ, ମୋଟ ଓ ମାଣିକଠାରୁ ବଳ ଅଧିକ ମୂଲ୍ୟବାନ ବୋଲି ଲୋକମାନଙ୍କର ବିଶ୍ୱାସ । ଏପରିକି ଲୋକମାନଙ୍କର ଧାରଣା ଯେ, ସାପ ମୁଣ୍ଡରେ ଏହା ମଣି ସେମାନେ ରାତି ଅନ୍ଧାରରେ ଆସିଲେ ସେହି ଗାତ ଉପରେ ଗୁହ୍ୟଦେଶ ଅବସ୍ଥାନ୍ତି । ସବୁ ଅନ୍ଧକାରରେ ଅନ୍ୟ ଦେଖାଯାଏ, ମଣିରୁ ମଧ୍ୟ ଷ୍ଟ୍ ଅନେକ ବାହାରେ ବୋଲି କଳ୍ପିତ ମାତ୍ର । ଏହି ମଣିକୁ ସାପ ଗାତ ଉପରୁ ଦିଏ ନେଇ ଆସନ୍ତି, ସାପ ସେହି ଚର୍ଚ୍ଚିତ ବ୍ୟକ୍ତିକୁ ମାରିଦିଏ ବୋଲି ଶୁଣାଯାଇଥାଏ । ଏତଦ୍ବ୍ୟତୀତ ମଣିଧରକୁ ସାପ ବଂଶକୁ ପ୍ରଣମିତ କରିଥାଏ ଓ ଦଂଶିତ ସ୍ଥାନକୁ ବସ ଟାଣି ନେଇଥାଏ ବୋଲି ଗ୍ରାମୀଣ ଲୋକମାନଙ୍କର ମତ । ମାତ୍ର ଏ ପର୍ଯ୍ୟନ୍ତ ପ୍ରତିଷ୍ଠିତ ସ୍ତରରେ ମଣିର କୌଣସି ତଥ୍ୟ ମିଳନାହିଁ ବା ସତ୍ୟତା ଜଣାପଡ଼ି ନାହିଁ ।

## ସାପର ଜଳ ?

ବିଶେଷତଃ ସାପର ଦ୍ୱନ୍ଦ୍ୱାରମ୍ଭ ଜଳ । ଏ ପ୍ରକାର ଜଳ ସାପ ଖାଉଥିବାବେଳେ ବାହାରକୁ ବାହାର କରୁଥିବାରୁ ମନୁଷ୍ୟକୁ ଜାଣୁଥାଏ ବୋଲି ଲୋକମାନଙ୍କର

Digitized by PPRACHIN, SOA

ଧାରଣା । ମାତ୍ର ତାହା ଠିକ୍ ନୁହେଁ । ସାପର ଜିଭ ବନ ଶବ୍ଦବେଳେ ବା ଖୋଜ ଶବ୍ଦବେଳେ ଏହି ଜିଭ ବାହାରକୁ ଅଣ୍ଟ ଅଧିକ ବାହାର ଯାଇଥାଏ । ଏହି ଜିଭ ମୂଲ୍ୟବାନ ଏକ ସ୍ପର୍ଶେନ୍ଦ୍ରିୟ ଭାବରେ କାର୍ଯ୍ୟ କରିଥାଏ । ଗନ୍ଧ ଜାଣିବା ସମୟରେ ଅଗରେ କୌଣସି ବସ୍ତୁ ବା ଶତ୍ରୁ ଉପସ୍ଥିତ ଏହି ଜିଭ ଦ୍ୱାରା ସାପ ଜାଣିପାରେ ଅର୍ଥାତ୍ ବସ୍ତୁ ଶତ୍ରୁ ବା ମନୁଷ୍ୟର ଗନ୍ଧ ଏହି ଜିଭ ଦ୍ୱାରା ଜଣା ପଡ଼ିଥାଏ । ଏହା ତାଳୁରୁ ଉପରେ ସାପର ଗନ୍ଧ ଜାଣିବା ଜାକୋବସନ୍ ଅଙ୍ଗ (Jocobsons Organ) ନାମକ ଏକ ଯନ୍ତ୍ର ଅଙ୍ଗକୁ ପଠାଇଦିଏ । ତେଣୁ ସାପ ଜିଭର ଉପରେ ଏହା ଗ୍ରନ୍ଥି ମଧ୍ୟରେ ଜାଣିପାରେ । ଏପରିକି ଉଭ ସ୍ତ୍ରୀ ଜାଣିବାରେ ମଧ୍ୟ ସହାୟକ ହୋଇଥାଏ । ଏତଦବ୍ୟତୀତ ଖାଦ୍ୟ ସନ୍ଧାନ ଓ ଶତ୍ରୁ ଠାବ କରିବାରେ ଏହାର ଭୂମିକା ରହିଛି । ଜିଭର ଏପରି ଗଠନ ପ୍ରକାର ସ୍ପର୍ଶ ଖୋଜୁ ବହୁଦୂରରେ ଥିବା ଅନ୍ୟ ଜୀବର ଉପସ୍ଥିତି ଜାଣିବା ଜୀବଜଗତରେ ଏକ ବୈଚିତ୍ର । କେଣ୍ଟ ଘର ଭିତରେ ପେଷଣରେ ସାପ ଘର ଭିତରକୁ ପ୍ରବେଶିବାର କାରଣ ତେଜର ଗନ୍ଧବାସ ନାକୁ ଶିକାର କରିବା ।

## ସାପର ଲୋମ ?

ପ୍ରକୃତରେ ସାପ ଦେହରେ ଲୋମ । ଜାତ ସାପମାନଙ୍କର ଏକ ସାଧାରଣ ଲକ୍ଷଣ । କେତେ ଗ୍ରାମବାସୀମାନେ ବୁଢ଼ା ସାପମାନଙ୍କର ଧଳା ଲୋମଥିବାର ବିଶ୍ୱାସ କରନ୍ତି । ମାତ୍ର ଏହା ସମ୍ପୂର୍ଣ୍ଣ ଭୁଲ୍ । କୌଣସି ସାପ ଦେହରେ ଲୋମ ଦେଖାଯାଏ ନାହିଁ । ମାତ୍ର କେତେକ ସାପ୍ୟତେଲା ଗୋଟର ଉଦ୍ଧାର ସାପ ମୁହଁରେ ପେଡ଼ାବାଲ ଚୋପିତେଲ ମଧ୍ୟରେ ମାସ୍ୟାପର୍ଣ୍ଣି ଭରଣାନ୍ତି । ଏହା କେବଳ ଲୋକମାନଙ୍କର ମନଗଢ଼ା ଭ୍ରାନ୍ତ ଧାରଣା ଏବଂ ମୂର୍ଖ୍ୟ ପଣ୍ଡ ।

## ସାପର ଗୋଡ଼ ?

ପ୍ରକୃତରେ ସାପର ଗୋଡ଼ ନଥା ସନ୍ଦେହଜନକ ଭଳିଆଳ । ବାସ୍ତବରେ ସାପର ସବୁ ଗୋଡ଼ ନଥାଏ । ଶରୀର ବାହାରେ ହାତ, ପାଦ, ଅଙ୍ଗ ଉଦ୍ଧାର କୌଣସି ଅବୟବ ନାହିଁ । ମାତ୍ର କେବଳ ଟେଲ୍ୟୁ ସାପ (Typhlops)ର ଦେହ ଭିତରେ ଓ ଅଜଗରର (python) ର ଦେହ ତଳ ଭାଗରେ ଲାଞ୍ଜପାଖ ଦୁଇ ପାର୍ଶ୍ୱରେ ଦୁଇଟି ଛୋଟ ନଖଥାଏ । ଅବଶ୍ୟ ଅଜଗରର ଏ ଦୁଇ ଅଙ୍ଗ ପଶ୍ଚାତ୍ ଅବୟବର ଅଂଶ । ଏହା ଚାଲିବା ବା ଅନ୍ୟ କୌଣସି କାର୍ଯ୍ୟରେ ସାହାଯ୍ୟ

ଡର ନଥାଏ । ମାତ୍ର ଏହାକୁ ସେ ଢୋଲରେ ହସ୍ତଚାପରେ ଓଁ ସାଙ୍ଗ ରୂପ ସ୍ୱରରେ ସମ୍ମୁଖ ସଙ୍ଗୀତ ଭଲପାଏ । ସାପୁଆକେଳାମାନେ ଏ ଦୁଇ ଅଂଶ ପ୍ରଦର୍ଶନ କରିବା ବେଳେ ନିଜ ସପକ୍ଷରେ ମିଥ୍ୟା କାହାଣୀ କହି ପଇସା ରୋଜଗାର କରନ୍ତି ।

ଏହିଭଳି ଅନେକ ଭ୍ରାନ୍ତ ଧାରଣା ଆମର ସାଧାରଣ ଲୋକମାନଙ୍କ ମନରେ ରହିଯାଇଛି । ତେଣୁ ଏଗୁଡ଼ିକୁ ମନ ଭିତରୁ ଦୂର କରିବା ଏକାନ୍ତ ଆବଶ୍ୟକ । ଏହି ଭ୍ରାନ୍ତ ଧାରଣା ବା ଅନ୍ଧ ବିଶ୍ୱାସ ଯୋଗୁ ମନୁଷ୍ୟ ଜୀବନ ଯିବାର ହେବାକୁ ଅନେକ ସମୟରେ ଦେଖାଯାଏ । ସାପ ଦେଖିଲା ମାତ୍ରେ ମାରିବ ସାପ ଆମର ଅନେକ ଉପକାର କରିଥାଏ । କୃଷି ଅନିଷ୍ଟକାରୀ ମୂଷାମାନଙ୍କୁ ନଷ୍ଟ କରିବା ଠାରୁ ଆରମ୍ଭ କରି ବିଷରୁ ଔଷଧ ପ୍ରସ୍ତୁତ କରିବା ଅନେକ ସାହାଯ୍ୟ ହୋଇଥାଏ । ତେଣୁ ଏମାନଙ୍କୁ ମନ ଭିତରେ ଶତ୍ରୁ ଭାବିବା, ପରିବେଶ ଓ ପ୍ରାକୃତିକ ସନ୍ତୁଳନ ରକ୍ଷା କରିବା ମନୁଷ୍ୟର ସଚ୍ଚୋଟୀ କର୍ତ୍ତବ୍ୟ ।

—*—

Digitized by PPRACHIN, SOA

ଉପେକ୍ଷିତା ନାଗମଣ୍ଡପର ଉପ ହାଣିବା ଏବଂ ଏହି ଜମ୍ମା ମତ ସାପ ଉପ ପ୍ରଣମିତ ହେବେ ଏହା ସମ୍ପୂର୍ଣ୍ଣ ଅସମ୍ଭବ ନୁହେଁ । ଅଣେ ସାପ ଆମୃତା ବାହାକୁ ନାଗମଣ୍ଡପ ଓ ମତ ଉପରରେ ଛୁଆ ବଞ୍ଚାଇ ଦେଇବେ । ଏହା କେବଳ ପ୍ରାଣମିତ ଅବସ୍ଥା ସ୍ୱରୂପ କଳ୍ପନା ପାରେ ।

ଏ ସମସ୍ତ ଆଲୋଚନା । ଏଥିରେ କୌଣସି ସତ୍ୟତା ନାହିଁ । ସେତେବେଳେ ମନିଷର ପ୍ରକୃତ ଓ ଅବସ୍ଥା ସମ୍ମୁଖରେ ଆଉ ସାମାନ୍ୟ ଥିଲା, ସେତେବେଳେ ସେ ଭୀତ ଉତ୍ପାଦକ ଅଦ୍ଭୁତ ସମସ୍ତ ବସ୍ତୁକୁ ଦେବତାର ରୂପ ଦେଇ ଧାରଣା କରି, ସେମାନଙ୍କର ସନ୍ତୋଷ ଲାଗି ନାନା ଭାବେ ପୂଜା କରୁଥିଲା । ସେଥିପାଇଁ ନାଗ ଦେବତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ନାଗ ଚତୁର୍ଥୀ ବା ଶ୍ରାବଣ ଅଷ୍ଟମୀ ବା ନାଗ-ପଞ୍ଚମୀରେ ସର୍ପ ପୂଜା ଏବେ ମଧ୍ୟ ଅନେକ ସ୍ଥାନରେ ପାଳିତ ହୁଏ ।

Digitized by PPRACHIN, SOA

# ଗୁଣିଗାରେଡ଼ି ଓ ତନ୍ତ୍ର ମନ୍ତ୍ର

ଅଦ୍ୟାବଧି ସାପ ଦଂଶ ପ୍ରଶମିତ କରିବାରେ ଗୁଣିଗାରେଡ଼ି ଓ ତନ୍ତ୍ର ମନ୍ତ୍ରର ପ୍ରାଧାନ୍ୟତା ଆମ ସମାଜରୁ ଲୋପ ପାଇନାହିଁ । ଗାଁ ଗହଳରେ କାହାକୁ ଯଦି ସାପ କାମୁଡ଼ିଲା ତେବେ ପ୍ରଥମ କାମ ହେଉଛି । ଓଝା । ତା ସହିତ ଜଡ଼ି ବୁଟି—ଗଛ, ଚେରମୂଳ ଓ ମାଟିପାଣି । ଯଦି ନିର୍ବିଷ ସାପ କାମୁଡ଼ିଛି ତେବେ ତ କଥା ଶେଷ । ଯଦି କୌଣସି ବିଷଧର ସାପ କାମୁଡ଼ିଛି ତେବେ ତ ବଡ଼ ଓଝା ବଇଦ୍ୟ ଡାକଦେବ । ରୋଗୀର ଅବସ୍ଥା ଭଲ ହେବ, ନା ମରେ ତେଣିକି ଜଣା ନାହିଁ । ବିଜ୍ଞାନ ଯୁଗରେ ଚହଳ ପକାଇବ ଆମ୍ଭଙ୍କୁ ସାପ କାମୁଡ଼ି ଥିଲା । ତାଙ୍କ ଏମିତି ଘୋଟିଏ ଘଟଣା ମାଗଲି ଯେ, ଏଠାରେ ମନ୍ତ୍ରର ମଡ଼ାଥିବା ଅମୂଳ ଦ୍ରବ୍ୟର ପ୍ରୟୋଗ କଥାବାର୍ତ୍ତା ଜଳ ।

ସେଠୁ କଥାର ଆରମ୍ଭ । କଏ କହିଲା "ଆରେ ମୁଁ ନା ଗୁଣିଆ କଥା କହୁଛୁ । ମୁଁ ନିଜ ଆଖିରେ ଦେଖିବା କଥା । ଆମ ଗାଁରେ ଜଣେ ଲୋକ'କୁ ସାପ କାମୁଡ଼ିଥି । ବହୁଁ ବହୁଁ ହେଉ କହିଲ । ଖାଲି ଗରଳ ତା' ଯାଚିକୁ ବଢ଼ୁଥାଏ । ସେ ବେଳେ ସାଙ୍ଗେ ଅନ୍ୟ ନାକୁ 'ବାଅଜ' ଗୁଣିଆ ପାଖକୁ ନେଲୁ । ଗୁଣିଆ ଦେଖି ନ ଶପି ଓଳଟାଇ ଦେଲା । ଭଲଭାବେ ନାଡ଼ି ଚିପିଲା । ଖଦଡ଼ କେଉଁଠି ନାହିଁ । ଖାଲି ମୁଣ୍ଡ ଉପରେ ଗୋଟିଏ ବାଳ' ହଲୁଛି । ଏଥର ତମ୍ବ ଧରିଲା ଗୁଣିଆ । କହୁଥାଏ ଡହଣ୍ଡ ଓଝା ଦେଇ ସ୍ୱରଗରକୁ ଡାକି ଦେଲା । ଖୁବ୍ ଜୋରରେ ବେଗରେ ପିଟୁଥାଏ ଭୂମି ଉପରେ । ହଠାତ୍ ନାଗହାପଟାଏ ଫୁ ଫୁ କରି ଫଣା ଟେକ ଧାଇଁ ଆସିଲା । ମୂର୍ଚ୍ଛା ଲଗାଇଲା ଦ୍ୱେଷ ମୁହଁରେ । ଆଉ ଥରେ ଅଧି ହଳଦ ପାଣିରେ ମୁହଁ ବୁଡ଼ାଇ ବିଷ ଶୋଷିବାରେ ଲାଗିଥାଏ ଅନ୍ତେ ଅନ୍ତେ ଚେତା ଫେରୁଥାଏ । ଗୁଣିଆ ଗୁଡ଼ବାର ନୁହେଁ । ତେବେ ପିଟୁଥାଏ । ତତସ୍ତ ସାପଟି ହାଲିଆ ହେଲା । ତର ଭଙ୍ଗ ମୋଡ଼ ହୋଇ ଚେତାଶୂନ୍ୟ ହୋଇ ପଡ଼ିଗଲା । ତକେଇ ସେତେବେଳକୁ କଥା କହୁଥିଲି । ବାଅଜ ଗୁଣିଆ ଗର୍ବରେ ସାପକୁ କହୁଥାଏ, ଆଉ ଏଣିକି କାମ କରିବୁ—ଏଥର ତୋତେ ଛାଡ଼ି ଦେଲି ।

ଏମିତି ଅନେକ କାହାଣୀ ଆମ ଓଡ଼ିଶାରେ ପ୍ରଚଳିତ । ତେତେବେଳେ ବଡ଼ ବଡ଼ ସିଦ୍ଧ ପୁରୁଷ ଥିଲେ । ସେମାନଙ୍କର ଅଭିଜ୍ଞ ଭିନ୍ନ ଭିନ୍ନ । ଅନେ ଜଣଠୁ ଶୁଣିଛି, ସାପ କାମୁଡ଼ା ବ୍ୟକ୍ତିକୁ ଗୋଟିଏ କୁଣ୍ଡରେ ଭର୍ତ୍ତି କରି ପାଣି ଢାଳି ଦିଅନ୍ତି । ପାଣି ଢାଳି ଢାଳି ବନ୍ଦିପାତ ହୋଇ ଶେଷରେ ସେ ମରଗଲା ।

Digitized by PPRACHIN, SOA

# ସାପ ମାଂସ

ବୋଆ କନ୍‌ଷ୍ଟ୍ରିକ୍ଟର ଅଜଗର ଭଳି ଏକ ଜାତିର ସାପ । ଏହି ସାପର ବିଷ ନାହିଁ । ତଥାପି ବୋଆ କନ୍‌ଷ୍ଟ୍ରିକ୍ଟର ବିଷୟରେ ଅନେକ ମିଛ ବହୁ ରୋମାଞ୍ଚକର କାହାଣୀ ଶୁଣିବାକୁ ମିଳେ । ତେଣୁ ସାଧାରଣ ଭାବରେ ଦେଖିବାକୁ ଗଲେ ବୋଆ କନ୍‌ଷ୍ଟ୍ରିକ୍ଟର ନାଁ ଶୁଣିଲେ ଲୋକେ ଭୟରେ ଥରନ୍ତି ।

କିନ୍ତୁ ବୋଆ ସାପଟିଏ ପାଇଲେ ଆଫ୍ରିକାର ଲୋକଙ୍କ ପାଟିରୁ ଲାଳ ଗଡ଼େ । ଯେତେ ଦାମ୍ ଦେବାକୁ ପଡ଼ୁ ପଛେ, ବୋଆ କିଣିବାକୁ ସେମାନେ ପଛାନ୍ତି ନାହିଁ । ସେମାନଙ୍କ ମତରେ ବୋଆ ମାଂସ ଠାରୁ ଅଧିକ ସୁସ୍ୱାଦୁ କିଛି ନାହିଁ । ସେଠାକାର ବଜାରରେ ବୋଆ ମାଂସ ବିକ୍ରୀ ହୋଇଥାଏ । ତେବେ ଏହା ଓଜନ ହିସାବରେ ବିକ୍ରୀ ନହୋଇ ବିକ୍ରୀ ହୁଏ ମିଟର ହିସାବରେ । ବୋଆର ମୋଟେଇକୁ ଦୃଷ୍ଟି ରଖି ମିଟର ବୋଆ ମାଂସର ଦର ଠିକ୍ ହୋଇଥାଏ । କେତେକ ଜାଗାରେ ବୋଆ ମାଂସ ବିକ୍ରୀ କରିବା ପାଇଁ ସରକାରୀ ଦୋକାନ ଖୋଲିଛି । ସରକାରୀ ଏଜେଣ୍ଟଙ୍କ ଛଡ଼ା ଅନ୍ୟ କେହି ବୋଆ ମାଂସ ବିକି ପାରିବେ ନାହିଁ ବୋଲି ନିୟମ ଜାରି କରାଯାଇଛି । କିନ୍ତୁ ସରକାରୀ ଦୋକାନରୁ ବୋଆ ମାଂସ ପାଇବାରେ ଖାଉଟିମାନଙ୍କୁ ସାଧାରଣତଃ ଅସୁବିଧା ହୋଇଥାଏ । ତେଣୁ କଳାବଜାରୀମାନେ ଏହାର ସୁଯୋଗ ନିଅନ୍ତି । ବ୍ଲାକ୍‌ରେ ବୋଆ ମାଂସ ବିକି ସେମାନେ ପ୍ରଚୁର ଲାଭ ମାରିନିଅନ୍ତି । କାରଣ ବ୍ଲାକ୍‌ରେ ବୋଆ ମାଂସ କିଣିବା ସମୟରେ ବୋଆ ମିଟର ପିଛା ବେଶ ଅଧିକ ଦାମ ଦେବାକୁ ପଡ଼ିଥାଏ ।

କେବଳ ଆଫ୍ରିକା କାହିଁକି, ପୃଥିବୀର ଅନ୍ୟାନ୍ୟ ବହୁ ଦେଶର ଲୋକେ ସାପ ମାଂସ ଖାଇବାକୁ ଭଲ ପାଆନ୍ତି । ଆମ ଦେଶର କେତେକ ସଂପ୍ରଦାୟଙ୍କ ପାଇଁ ସାପ ମାଂସ ଏକ ସୁସ୍ୱାଦୁ ଖାଦ୍ୟ । ଇଣ୍ଡୋନେସିଆରେ ଅଜଗର ସାପକୁ କାଟି ତାର ଖଣ୍ଡା ବାହାର କରି କଟ୍‌ଲେଟ୍ ତିଆରି କରାଯାଏ । ଏହି କଟ୍‌ଲେଟର ଖୁବ୍ ଆଦର । ଆମେରିକାର ହୋଟେଲଗୁଡ଼ିକରେ ରାଟଲ୍-ସ୍ନେକ୍ ନାମକ ଏକ ପ୍ରକାର ବିଷାକ୍ତ ସାପକୁ ସ୍ୱଚ୍ଛ ଟିଣରେ ବନ୍ଦ କରି ବିକ୍ରୀ କରାଯାଇଥାଏ । ଏହାକୁ କିଣିବା ପାଇଁ ଗ୍ରାହକ ମାନଙ୍କ ମଧ୍ୟରେ ପ୍ରବଳ ପ୍ରତିଯୋଗିତା ।

ଚୀନ୍‌ର ବଜାର ମାନଙ୍କରେ ବିଭିନ୍ନ ଧରଣର ସାପ ବିକ୍ରୀ ଦୋକାନମାନ ଦେଖିବାକୁ ମିଳେ । ସେହି ଦୋକାନମାନଙ୍କରେ ଜୀଅନ୍ତା ସାପ ସବୁକୁ ଭଲ ଖାଇବା ପିଇବାକୁ ଦେଇ ବଡ଼ ବଡ଼ ଖୋପାଳକରେ ରଖାଯାଇଥାଏ । କେଉଁ ସାପ ମାଂସକୁ କେମିତି ରାନ୍ଧିଲେ ତାହା ଅଧିକ ସୁସ୍ୱାଦୁ ଲାଗେ ତ ଅଧିକ କେଉଁ ସାପ ମାଂସରେ ଭଲ ସୁପ୍ ବନାଯାଇପାରେ । ଖାଉଟି ମାନେ ନିଜ ନିଜର ପସନ୍ଦ

Digitized by PPRACHIN, SOA

ଅନୁସାରେ ସାପ ଖେଳାଳିକୁ ଜୀଅନ୍ତା ସାପକୁ ଚିରିଦେଇ ସୁଆଦୁ ବାସ୍ତବ ଉପର କରିଥାନ୍ତି ।

କୋରିଆନମାନେ ବୋଆ ମାଂସର ଆଦର ବେଶୀ । ସେଠାକାର କାଉସ୍ ସୋଙ୍ଗ ଉତ୍ସବରେ ସାଧାରଣତଃ ସାପ ମାଂସ ପରଷା ଯାଇଥାଏ । ବୋଆର ଚପ୍ ସେଠାରେ ଖୁବ୍ ଲୋକପ୍ରିୟ । ବହୁତ ଉଚ୍ଚ ଜାତର ସାପକୁ ନେଇ ରନ୍ଧା ଯାଇଥିବା ସୋଲ ଖାଇବାକୁ ସେଠାରେ ପ୍ରାୟ ସମସ୍ତେ ଭଲ ପାଇଥାନ୍ତି । ଏଭଳି ସୋଲର ନାଁ ହେଉଛି 'ଛଅ ସାପଙ୍କ ସୁପ ।'

ଜାପାନରେ ଅଛନ୍ତି କେତେକ ସ୍ୱତନ୍ତ୍ର ଧରଣର ହୋଟେଲ । ସେହି ହୋଟେଲମାନଙ୍କରେ କେବଳ ସାପ ମାଂସରୁ ପ୍ରସ୍ତୁତ ହେଉଥିବା ଭଜା, ତରକାରି, କଟ୍ଲେଟ ଚପ୍ ଇତ୍ୟାଦି ଭଲଭଲ ରନ୍ଧା ଖାଦ୍ୟ ଯୋଗାଇ ଦିଆଯାଏ । ସେଠାରେ 'ମାମୁସି' ନାମକ ସାପମଦ ମଧ୍ୟ ପିଇବାକୁ ମିଳିଥାଏ । ସାପର ରକ୍ତ ମିଶାଯାଇ ତିଆରି ହୁଏ 'ମାମୁସି' ତେବେ ମାମୁସିର ସ୍ୱାଦ ଓ ପ୍ରଭାବ କେବଳ ସେହି ମଦ ପିଇବା ଲୋକଙ୍କୁ ହିଁ ଜଣା ।

ସାପ ମାଂସ ପରିବେଷିତ ହେଉଥିବା ସେଭଳି କେତେକ ହୋଟେଲମାନଙ୍କରେ ଗ୍ରାହକମାନଙ୍କ ପାଇଁ ଆଉ ଏକ ସୁବିଧା ରହିଥାଏ । ହୋଟେଲର ମାଲିକ ମଧ୍ୟ ହୋଟେଲରେ ବହୁତ ଜାତର ଜୀଅନ୍ତା ସାପମାନ ପୋଷିଥାନ୍ତି । ସେହି ସାପକୁ ଏକ ବାକ୍ସ ସାହାଯ୍ୟରେ ନେଇ ଗ୍ରାହକମାନଙ୍କ ପାଖରେ ପ୍ରଦର୍ଶନ କରାଯାଏ । ସ୍ୱ ସ୍ୱ ମନର ରୁଚି ଅନୁସାରେ ସାପ ମନୋନୀତ କଲାପରେ ସେହି ସାପକୁ ଗ୍ରାହକର ଇଚ୍ଛା ମୁତାବକ ରନ୍ଧାଯାଇ ପରିବେଷଣ କରାଯାଇଥାଏ ।

କେବଳ ଯେ ଏସିଆ ଓ ଆଫ୍ରିକାର ଲୋକେ ସାପ ମାଂସକୁ ପସନ୍ଦ କରିଥାନ୍ତି ତାହା ନୁହେଁ । ବେଳେବେଳେ ୟୁରୋପର ଅଧିବାସୀମାନେ ମଧ୍ୟ ସାପମାଂସ ଖାଇବାରେ ଆପତ୍ତି କରୁ ନଥିଲେ । କୁହାଯାଏ ଯେ, ସପ୍ତଦଶ ଓ ଅଷ୍ଟାଦଶ ଶତାବ୍ଦୀରେ ୟୁରୋପରେ ଯେଉଁ ଦୁର୍ଭିକ୍ଷ ପଡ଼ିଥିଲା, ସେତେବେଳେ ଏହି ସାପ ମାଂସ ଖାଇ ବହୁ ଲୋକଙ୍କର ଜୀବନ ରକ୍ଷା କରିବା ସମ୍ଭବ ହୋଇପାରିଥିଲା । କାରଣ ସେତେବେଳେ ୟୁରୋପର ସବୁଆଡ଼େ ସାପମାନେ ହାଜର ହେଉଥିଲେ, ତେବେ ସାପ ମାଂସ ଅନ୍ୟ ମାଂସ ଭଳି ଏକ ପୁଷ୍ଟିସାର ଜାତୀୟ ଖାଦ୍ୟ ।

ସେମାନଙ୍କର ବଂଶ ଏଭଳି ବଢ଼ିଲା ଯେ, ସାପ ଦ୍ୱୀପରେ ବର୍ତ୍ତମାନ ମାଳ ମାଳ ହୋଇ ରହୁଛନ୍ତି । ଗୁଆମ ଦ୍ୱୀପ ପ୍ରାକୃତିକ ସମ୍ପଦରେ ଭରପୂର । ବହୁ ପ୍ରକାର ଜନ୍ତୁ ପକ୍ଷୀ ଏବଂ ସରୀସୃପ ଏହି ଦ୍ୱୀପରେ ଦେଖାଯାଆନ୍ତି । ଏହି ସାପମାନେ ସେଥିରୁ ୧୨ ପ୍ରକାର ପକ୍ଷୀ ସବଶ ଜର୍ମ୍ନ କରି ସାରିଲେଣି । ଏହା ବ୍ୟତୀତ ବାଦୁଡ଼ି, ମୂଷା, ଝିଟିପିଟି କେତପାଇବାକୁ ବସିଲେଣି । ତାଙ୍କ ସଂଖ୍ୟା ଭେଙ୍କଠି କମିବ ଦେଖାଯାଉଛନ୍ତି ।

ବଡ଼ ସାପଗୁଡ଼ିକର ଲମ୍ବା ୭୦ରୁ ୮୦ ସେଣ୍ଟିମିଟର ପର୍ଯ୍ୟନ୍ତ । ସେମାନେ ମୂଷା ଚଢ଼େଇରେ ଏତେଷ୍ଟ ନ ହୋଇ ମଣିଷଙ୍କ ପ୍ରତି ଡ ଲ ହେଲେଣି । ସେମାନଙ୍କ କାମୁଡ଼ାରେ ଶିଶୁମାନେ ମର ଯାଉଛନ୍ତି । ବଡ଼ ମଣିଷମାନଙ୍କୁ ଦଂଶନ ଫଳରେ ହୋଇ ବହୁଦିନ ଧର ଚିକିତ୍ସା କରିବାକୁ ପଡ଼ୁଛି । ଡାକ୍ତରଖାନାରେ ରହିବାକୁ ପଡ଼ୁଛି । କେତେ ମରିବ ଯାଉଛନ୍ତି ।

ଦାହାରେ ଦିନ ଏ ସାପମାନେ ଗଛରେ ରହୁଛନ୍ତି, ପରେ ଏମାନେ ଲେଡ଼ି ଟେଲେଫୋନର ଖୁଣ୍ଟରେ ଲେଖି ମିଟର ପାଖରେ ବହୁଣା କଲେ, ତାଙ୍କ ଯୋଗରେ ବତୀ ବନ୍ଦ ହୁଅନ୍ତି । ଏମିତି କ ପରେ ଦାହାରେ ବନ୍ଧନ ଭାବରେ ଜଣି ପର୍ଚ୍ଚ ସର୍ଭିଷ୍ଟ୍ କର ଏମାନେ ବର୍ଷକୁ ଶହ ଶହ ଥର ବନ୍ଧନ ବନ୍ଦ କରୁଥାନ୍ତି ।

ଏଭ ଭଥା ଜତୁ ଭତୁ ବଶିଷ୍ଟ ପଦାର୍ଥ ବଜ୍ଞାନ, ପ୍ରଫେସର ବୃଜମଣି ସାମନ୍ତ କହନ୍ତି, 'କହୋ ଏତେ ଦୂର ରଭଳ ଭଥା ବି'ଶ ଭଥା ହେବ ? ଅମ ସଜୀବ ବୃଦ୍ଧ ସହରରେ ତ ଓଡ଼ ସାପଙ୍କ ଅଖଣ୍ଡ ରାଜୁତି । ମୁଁ ତ ୧୪ ବର୍ଷ ବୃଦ୍ଧରେ ଉଚ୍ଚ ବିଦ୍ୟାଳୟ ଭଳେଜରେ ଅଧ୍ୟାପନା କରୁଛି । ଯେଉଁ ପଥ, ପାଇଖାନା, ଭଣ୍ଡ ଭଣ୍ଡାରରେ ଗୁହାରେ ଓଡ଼ ସାପ । ସାଧାରଣତଃ ସେ ସାପ କାମୁ ଏତେ ଦୁଷ୍ଟ ନୁହନ୍ତି । ଅଘାତ ନ ପାଇଲେ କାମୁଡ଼ନ୍ତି ନାହିଁ ।'

ପିଲ୍ଲମାନଙ୍କୁ ଅତି ଆଦର କୋଳ ଭିତ ସେମାନଙ୍କୁ ଦେଖାଇତ କରେ । ପିଲ୍ଲମାନେ ବାହାରକୁ ବୁଲି ବାହାରିଲେ ବୋଆ ସେମାନଙ୍କ ସାଙ୍ଗରେ ବାହାରି ତାଙ୍କ ଉପରେ ନଜର ରଖିଥାଏ । ବୋଆ ସାଙ୍ଗରେ ଥିଲେ ବାପ ମା'ମାନେ ନିଶ୍ଚିନ୍ତ । କେବଳ ଯେ ବିଷାକ୍ତ ସାପମାନେ ବୋଆଠାରୁ ଦୂରରେ ରହନ୍ତି ତାହା ନୁହେଁ, ବୋଆ ଡରରେ ଅନ୍ୟ କୌଣସି ଜନ୍ତୁ ବ ପିଲାର କ୍ଷତ କରିବାକୁ ସାହସ କରନ୍ତି ନାହିଁ ।

କିନ୍ତୁ ବୋଆ ମଣିଷମାନଙ୍କ ସାଙ୍ଗରେ ଏପରି ଘନିଷ୍ଠ ସମ୍ପର୍କ ସୃଷ୍ଟି କରେ କାହିଁକି ? ଏ ପ୍ରଶ୍ନର କୌଣସି ସନ୍ତୋଷଜନକ ଉତ୍ତର ମିଳିପାରୁ ନାହିଁ । ହୁଏତ ବୋଆର ମନସ୍ତତ୍ତ୍ୱ ବୋଆକୁ ହିଁ ଜଣା ।

Digitized by PPRACHIN, SOA

# ଚିକିତ୍ସା ଶାସ୍ତ୍ରର ସଙ୍କେତରେ ସାପ

ଆପଣମାନେ କେତେ କେତେ ଚିକିତ୍ସା ବିଜ୍ଞାନର ପ୍ରତୀକ ଧାରଣ କରୁଥିବା ସଙ୍କେତ ଚିତ୍ର ଦେଖିଥିବେ। ଏହି ସଙ୍କେତରେ ରହିଥାଏ ଏକ ଦଣ୍ଡ। ଦଣ୍ଡ ଉପରେ ପାଖଟିଏ ରଖାଯାଇଥାଏ। ଦଣ୍ଡଟିରେ ଗୁଡ଼େଇ ହୋଇ ରହିଥାଏ ଏକ ସାପ। ଏଭଳି ସଂକେତକୁ ସାରା ବିଶ୍ୱରେ ଚିକିତ୍ସା ବିଜ୍ଞାନର ସଂକେତ ରୂପେ ସ୍ୱୀକୃତି ମିଳିଛି। ଉକ୍ତ ସଂକେତର ଡିଜାଇନ୍‌ରେ ଟିକେ ଭିନ୍ନ ପରିବର୍ତ୍ତନ ଲକ୍ଷ୍ୟ କରାଯାଇପାରେ। କିନ୍ତୁ ଏହା ମୌଳିକତା ସବୁ ସଂକେତରେ ସମାନ। ତେବେ ଚିକିତ୍ସା ବିଜ୍ଞାନର ସଂକେତରେ ସାପ ପ୍ରଦର୍ଶିତ ହୋଇଛି କାହିଁକି ?

ଗ୍ରୀକ୍ ପୁରାଣରେ ଏଥେନାଙ୍କୁ 'ଜ୍ଞାନଦେବୀ', ହାଇଜିଆଙ୍କୁ 'ସ୍ୱାସ୍ଥ୍ୟଦେବୀ' ଓ ଇସ୍କୁଲାପିୟସ୍‌ଙ୍କୁ 'ଔଷଧପତ୍ରର ଦେବତା' ରୂପେ ଅଭିହିତ କରାଯାଇଛି। ଏଥେନା, ହାଇଜିଆ ଓ ଇସ୍କୁଲାପିୟସ୍‌ଙ୍କ ଚିତ୍ର କିମ୍ବା ମୂର୍ତ୍ତିସହ ସବୁବେଳେ ସାପର ଚିତ୍ର କିମ୍ବା ମୂର୍ତ୍ତି ଶୋଭା ପାଉଥିଲା। ଗ୍ରୀକମାନେ ବିଶ୍ୱାସ କରନ୍ତି ଯେ ଗ୍ରୀସ୍‌ର ଏପିଡ଼ରସ୍ ନାମକ ସ୍ଥାନ ଇସ୍କୁଲାପିୟସ୍‌ଙ୍କ ଜନ୍ମସ୍ଥଳୀ। ସେଠାରେ ତାଙ୍କ ସମ୍ମାନାର୍ଥେ ଏକ ବିରାଟ ମନ୍ଦିର ନିର୍ମାଣ କରାଯାଇଥିଲା। ଉକ୍ତ ମନ୍ଦିର ବେଢ଼ାକୁ ବିରାଟ ବିରାଟ ପୋଷା ସାପମାନଙ୍କର ଅବାଧ ଚଳାଚଳ ଥିଲା ବୋଲି କୁହାଯାଇଥାଏ। ସେହି ସାପଗୁଡ଼ିକୁ କୁହାଯାଉଥିଲା ଇସ୍କୁଲାପିୟସ୍‌ଙ୍କ ସାପ। ସେମାନଙ୍କୁ ଦେବତାଙ୍କ ଅବତାର ରୂପେ ମନେ କରାଯାଉଥିଲା। ସେହି ସାପମାନଙ୍କର କୁଆଡ଼େ ରୋଗ ଆରୋଗ୍ୟ କରିବାର ଅଦ୍ଭୁତ ଶକ୍ତି ଥିଲା। ତେଣୁ ପରବର୍ତ୍ତୀକାଳରେ ଇସ୍କୁଲାପିୟସ୍‌ଙ୍କ ସାପକୁ ଚିକିତ୍ସା ଶାସ୍ତ୍ରର ସଙ୍କେତ ରୂପେ ଆନ୍ତର୍ଜାତିକ ସ୍ୱୀକୃତି ମିଳିଲା।

Digitized by PPRACHIN, SOA

# ଜଗନ୍ନାଥଙ୍କ ମଣି

ସାପର "ମଣି" ସମ୍ବନ୍ଧରେ ଅନେକ କିମ୍ବଦନ୍ତୀ, କାହାଣୀ ଓ ଲୋକ କଥା ଆମ ଦେଶରେ ପ୍ରଚଳିତ । ମଣିଚୂଡ଼ ସାପର କାହାଣୀ ଆଇମା'' ପାଖରୁ ଶୁଣିଛୁ । ସବୁଠାରୁ ବଡ଼ ମଣି ବହନ କରୁଥିବା ଏହି ସାପ କୁଆଡ଼େ ପଦାକୁ ରାତିରେ ଚରିବାକୁ ବାହାରିଲେ ତା ମଣିକୁ ବାହାରେ ଥୋଇ ଖାଦ୍ୟ ଅନ୍ୱେଷଣରେ ଯାଏ । ଆଉ ସେହି ମଣିର ଉଜ୍ଜ୍ୱଳ ଆଲୋକରେ ଚତୁର୍ଦ୍ଦିଗ ଆଲୋକିତ ହୋଇ ଉଠେ । ଏହି 'ମଣିଚୂଡ଼ ସାପ' କିମ୍ବଦନ୍ତୀ ଅଦ୍ୟାବଧି ଆଇମା'ର କାହାଣୀ ଭିତରେ ବିଦ୍ୟମାନ । ଏହାକୁ ଆମେ କେହି ଦେଖି ନାହୁଁ ।

କେତେକ ସାପୁଆ କେଳା ଗୋଖର ସାପ ମୁଣ୍ଡରୁ ମଣି ବାହାର କରୁଥିବାର ଆମେ ଆଖିରେ ଦେଖିଛୁ । କାଚ ଭଳି ଝକ୍ ଝକ୍ କରୁଥିବା ଈଷତ ହଳଦିଆ ରଙ୍ଗର ଏହି ସ୍ୱଚ୍ଛ ଗୋଲାକାର ବସ୍ତୁଟି ପ୍ରକୃତରେ ସାପର ମଣି ବା କେଳାଙ୍କର ଏହା ଏକ ଚାଲବାଜି ତାହା ଠିକ୍ ରୂପେ ଜାଣି ହୁଏନି । ଏହି ମଣିକୁ କେଳାମାନେ ସିନ୍ଦୂର ମଧ୍ୟରେ ହାଇଡ଼ ରଖି ବନ୍ଦି କରିଥାନ୍ତି । କେତେକ କହନ୍ତି କେଳାମାନେ କୌଣସି ଜିନିଷକୁ ଭଲରୂପେ ପାଲିସ୍ କରି ତାକୁ ଶୁଖିଲା ରଖିବା ପାଇଁ ହଳଦି ଗୁଣ୍ଡ ବା ସିନ୍ଦୂର ଫରୁଆରେ ସାଇତି ରଖନ୍ତି । ତେବେ ଏ ବିଷୟରେ ବିଜ୍ଞାନ ତା'ର ମତାମତ ସ୍ପଷ୍ଟ ଭାବେ ପ୍ରକାଶ କରିନାହିଁ ।

ଏହି ମଣି ସମ୍ବନ୍ଧରେ ଓଡ଼ିଶାର ଲୋକ କଥାରେ ଏକ ସୁନ୍ଦର ଗପ ଶୁଣିବାକୁ ମିଳିଥାଏ । ମହାପ୍ରଭୁ ଜଗନ୍ନାଥଙ୍କ ମୁକୁଟରେ ଥିବା ଏକ 'ମଣି' ଏହି ଲୋକକଥାର ବିଷୟ ବସ୍ତୁ ।

ବହୁ ପୁରାତନ କାଳରେ ଜଣେ ସାଧବ ବେପାର ବଣିଜ ସାରି ଦେଶକୁ ଫେରୁଥିବା ସମୟରେ ସମୁଦ୍ର ମଧ୍ୟରେ ଏକ ଦ୍ୱୀପରେ ଉପନୀତ ହେଲେ । ଚାରିଆଡ଼େ ଅନ୍ଧାର ଥିବା ସତ୍ତ୍ୱେ ଦ୍ୱୀପଟିରେ ଏକ ଉଜ୍ଜ୍ୱଳ

Digitized by PPRACHIN, SOA

ଆଲୋକ ଦେଖାଯାଉଥିଲା । ବଣିକ ସାଧବ ଆଗରୁ ଶୁଣିଥିଲେ ସମୁଦ୍ର ମଝିରେ ଏକ 'ମଣିଦ୍ୱୀପ' ଥିବା କଥା । ତେଣୁ ଏହି ଆଲୋକ ଯେ ସାପର ମଣି ହୋଇଥିବ ସାଧବଙ୍କର ସନ୍ଦେହ ରହିଲା ନାହିଁ । ତେଣୁ ମଣିଟିକୁ କପଟରେ ହାସଲ କରିବେ ଏହା ସ୍ଥିର ହେଲା ଶନ୍ତା । ସାପ ଯଦି ଥିବ ତେବେ ରକ୍ଷା ନାହିଁ । ତେଣୁ ରାତିରେ ବିପଦକୁ ବରଣ କରି ଆଲୋକ ଆସୁଥିବା ସ୍ଥାନକୁ ଲକ୍ଷ୍ୟରଖି ସକାଳ ହେବା ପର୍ଯ୍ୟନ୍ତ ଅପେକ୍ଷା କଲେ । ସକାଳ ହେବା ମାତ୍ରେ ମଣିଟିକୁ ସାଧବ କବଳିତ କରି ବୋଇତ ମଧ୍ୟକୁ ଫେରି ଆସିଲେ । ପଛରୁ ଶୁଭୁଥାଏ ସାପର ସୁ ସୁ ଗର୍ଜନ । ତଳେ ମଧ୍ୟ ଚଳମ୍ଭ ନ କରି ବୋଇତ ଛୁଟାଇଲେ ସମୁଦ୍ରର ଅତଳ ଗର୍ଭକୁ । କିନ୍ତୁ ସାପ ଛାଡ଼ିବାର ନୁହେଁ । ସମୁଦ୍ରର ପାଣିକୁ ଦୁଇଭାଗ କରି ଫଣାଟେକି ସାପ ଧାଇଁଛି ବୋଇତ ଆଡ଼କୁ । କଥାରେ କହନ୍ତି 'ମଣିହରା ଫଣି ଅତି ଭୟଙ୍କର ।' ସାଧବ ଏଥର ପ୍ରମାଦ ଗଣିଲେ । କିଏ ରକ୍ଷା କରିବ ଏ ବିପଦରୁ ? ସାପ କ୍ରମଶଃ ନିକଟତର ହେଲା । ସେ ଯେ ମାରିବାକୁ ଉଦ୍ୟତ ହେଉଛି, ଏତିକି-ବେଳେ ସାଧବ ଡାକିଲେ-ହେ ଚକାଡୋଳା ଜଗତର ନାଥ ! ଜଗନ୍ନାଥ ! ତୁ ରକ୍ଷା କର । ଏ ମଣି ତୋର । ଏ ସାପ ମୁଣ୍ଡରୁ ବଞ୍ଚିଲେ 'ମଣି' ତୋର ମୁକୁଟରେ ଖୋସା ହେବ । ବୋଇତର ନାବିକମାନେ ବି ସମସ୍ୱରରେ ଚିତ୍କାର କଲେ, ହେ ଜଗତର ନାଥ ଜଗନ୍ନାଥ ! ତୁ ହିଁ ରକ୍ଷାକର୍ତ୍ତା ! ଆମକୁ ଏ ବିପଦରୁ ରକ୍ଷାକର । ଚକ୍ରଧାରୀ ଡାକ ଶୁଣିଲେ । ଦୀନ ଉଦ୍ଧାରଣ କର୍ତ୍ତା ସିଏ । ହଠାତ୍ କୁଆଡ଼ୁ ଏକ ବିରାଟ ପକ୍ଷୀ ଉଡ଼ି ଆସି ସାପକୁ ଦୁଇଖଣ୍ଡ କରିଦେଲା । ଉନ୍ମତ୍ତ ମୁଣ୍ଡଟା ଥରକିନା ପାଣି ଭିତରେ ଲୁଚିଗଲା ।

କଥିତ ଅଛି, ସାଧବର ବୋଇତ କୂଳରେ ଲାଗିବା ମାତ୍ରେ ପ୍ରଥମେ ସେ ଜଗନ୍ନାଥଙ୍କ ପାଖକୁ ଯାଇ ମଣିଟିକୁ ସମର୍ପଣ କଲେ । ସେହି ମଣିଟି ଅଦ୍ୟାବଧି ଜଗନ୍ନାଥଙ୍କ ମୁକୁଟରେ ଶୋଭା ପାଉଛି ।

Digitized by PPRACHIN, SOA

# ଗୋଧି ଶରୀରରେ ସର୍ପବିଷ

# ନିରୋଧକ ତତ୍ତ୍ୱ

ପ୍ରାତଃ ସ୍ମରଣୀୟ ବୈଜ୍ଞାନିକ ଚାର୍ଲ୍‌ସ ଡାରଉଇନ ତାଙ୍କ ସୁପ୍ରସିଦ୍ଧ ମତବାଦରେ ସୂଚନା ଦେଇଥିଲେ ଯେ' ସୃଷ୍ଟିର ପ୍ରାରମ୍ଭରୁ ସଜୀବମାନଙ୍କ ମଧ୍ୟରେ ଅବିରତ ଜୀବନ ସଂଗ୍ରାମ ଚାଲିଛି । ଏଥିରେ ଯେଉଁମାନେ ବଳବତ୍ତର ହେଉଛନ୍ତି ସେହିମାନେହିଁ କେବଳ ବଞ୍ଚି ରହୁଛନ୍ତି । ଅନ୍ୟମାନେ ବିଲୁପ୍ତ ହୋଇଯାଉଛନ୍ତି ।

ଏହି ଜୀବନ ସଂଗ୍ରାମ ବିଭିନ୍ନ ସ୍ତରରେ ବିଭିନ୍ନ ରୂପରେ ଚାଲିଛି । ପ୍ରଥମତଃ ଏହା ପ୍ରକୃତି ଓ ପରିବେଶ ସହିତ ଏବଂ ଦ୍ୱିତୀୟତଃ ନିଜ ନିଜ ମଧ୍ୟରେ ସଂଘଟିତ ହେଉଛି । ପରିସ୍ଥିତି ଉପରେ ନିର୍ଭର କରି ଏ ସଂଗ୍ରାମ କେତେକ ସମୟରେ ଦୈହିକ ସ୍ତରରେ, କିନ୍ତୁ ଅଧିକାଂଶ ସମୟରେ ରସାୟନିକ ସ୍ତରରେ ଚାଲୁଛି । ମନୁଷ୍ୟ ନିଜର ସ୍ୱାର୍ଥପାଇଁ ଏକ ନିର୍ଦ୍ଦିଷ୍ଟ ଜାତୀୟ ପ୍ରାଣୀକୁ ହତ୍ୟାକରି ଚାଲିବା ଏବଂ ପରିଶେଷରେ ଉକ୍ତ ପ୍ରାଣୀଟି ଧରିତ୍ରୀପୃଷ୍ଠରୁ ନିଶ୍ଚିହ୍ନ ହୋଇଯିବା, ଦୈହିକ ସ୍ତରରେ ଚାଲିଥିବା ଜୀବନ ସଂଗ୍ରାମ ଏକ ଜମାଟ ଦୃଷ୍ଟାନ୍ତ । ସୃଷ୍ଟିର ପ୍ରାରମ୍ଭରୁ ପରିବେଶ ସହ ତାଳ ଦେଇ ଜୀବଠାରେ ଘଟୁଥିବା ରସାୟନିକ ପରିବର୍ତ୍ତନହିଁ ଏହାର ଭିତ୍ତିପ୍ରସ୍ତର । ଯେଉଁ ସବୁ ସଜୀବ ଶରୀରରେ ଏତାଦୃଶ ପରିବର୍ତ୍ତନ ଯଥା ସମୟରେ ସମ୍ଭବ ହୋଇ ନ ପାରେ ତାହା ବିଲୁପ୍ତ ହୋଇଯାଏ । ଏହି କାରଣରୁ ଡାଇନୋସର୍ ସମେତ ବହୁ ପଶୁ ପକ୍ଷୀ ଓ ଉଦ୍ଭିଦ ବିଲୁପ୍ତ ହୋଇ ଯାଇଛନ୍ତି ବୋଲି ବୈଜ୍ଞାନିକମାନଙ୍କର ମତ ।

ଜୀବମାନଙ୍କ ଶରୀରରେ କାଳକ୍ରମେ ବିଭିନ୍ନ ଜୀବାଣୁ ବିରୁଦ୍ଧରେ, ଜୀବାଣୁମାନଙ୍କ ଠାରେ ବିଭିନ୍ନ ଔଷଧ ପ୍ରତି ତଥା ଉଦ୍ଭିଦମାନଙ୍କ ଠାରେ ବିଭିନ୍ନ କୀଟାଣୁ ପ୍ରତି ଜାତ ହେଉଥିବା ପ୍ରତିରୋଧ ଶକ୍ତି ରସାୟନିକ ସ୍ତରରେ ଚାଲିଥିବା ଜୀବନ ସଂଗ୍ରାମର ଗୋଟିଏ ଗୋଟିଏ ପରିପ୍ରକାଶ ।

Digitized by PPRACHIN, SOA

ଏତ ନର୍ଦ୍ଦିଷ୍ଟ ପରିବେଶ ମଧ୍ୟରେ ସେମାନଙ୍କୁ ବଞ୍ଚି ରହିବା ପାଇଁ ପ୍ରକୃତ ସେମାନଙ୍କ ଠାରେ ଏ ଶକ୍ତି ସୃଷ୍ଟି କରିଛନ୍ତି । ନଚେତ୍ ସେମାନେ ମଧ୍ୟ ଧିରେ ଧିରେ ଲୋପ ପାଇଥାନ୍ତେ । କେତେ ବେଜି ଶରୀରରେ ସର୍ପ ବିଷ ନିରୋଧକ ତତ୍ତ୍ୱ ସୃଷ୍ଟି ହେବା ଏହା ଭଳି ଆଉ ଗୋଟିଏ ଘଟଣା ।

ସାପ ଏବଂ ବେଜି ସାଧାରଣତଃ ଗୋଟିଏ ପରିବେଶ ମଧ୍ୟରେ ବାସ କରନ୍ତି । ଅତଏବ ଅଧିକାଂଶ ସମୟରେ ସେମାନଙ୍କୁ ପରସ୍ପରର ସଂସର୍ଗରେ ଆସିବାକୁ ହୁଏ ଏବଂ କେତେକ ସ୍ଥଳରେ ନିଜ ନିଜ ଧିତରେ ପ୍ରତିଯୋଗିତା ମଧ୍ୟ କରିବାକୁ ପଡ଼େ । ତେଣୁ, ବେଜି ଅନେକ ସମୟରେ ବିଷାକ୍ତ ସର୍ପ ଦଂଶନର ସମ୍ମୁଖୀନ ହୋଇଥାଏ । ଏଣୁ, ସେଥିରୁ ତାହାକୁ ରକ୍ଷା କରିବା ପାଇଁ ସମ୍ଭବତଃ ପ୍ରକୃତ ତା'ଠାରେ ସର୍ପ ବିଷ ନିରୋଧକ ତତ୍ତ୍ୱ ସୃଷ୍ଟି କରିଛନ୍ତି ।

୧୯୬୦-ଦଶକ ଶେଷାର୍ଦ୍ଧର କଥା । ଜଣେକ ରୁଷିୟାନ ପ୍ରାଣୀ ବିଜ୍ଞାନୀ ବଉଲ ନାଉର ବେଜି ଧରି ଅଧ୍ୟୟନ କରୁଥିଲେ । ସେଥିପାଇଁ ସେଗୁଡ଼ିକୁ ପିଞ୍ଜରାବଦ୍ଧ କରାଯାଉଥିଲା । ଥରେ ଗୋଟିଏ ପ୍ରାୟ ୨ ଫୁଟ ଲମ୍ବର ସାପଟିଏ ବାନ୍ଧି କରିଦିଆଗଲା । ଅତଏବ, ସେଥିରୁ ଜଣାପଡ଼ିଲା ଯେ' ଏ ପ୍ରାଣୀ ସର୍ପ ଭକ୍ଷଣ କରେ ଏବଂ ତାହାର ବିଷକୁ ମଧ୍ୟ ହଜମ କରିଦିଏ ।

ପରବର୍ତ୍ତୀ ସମୟରେ ଏହା ଉପରେ ଅଧିକ ଅଧ୍ୟୟନ ପାଇଁ ବୈଜ୍ଞାନିକମାନେ ମନ ବଳାଇଲେ । ସେମାନେ ଗୋଟିଏ ପିଞ୍ଜରା ମଧ୍ୟରେ ଗୋଟିଏ ବେଜିକୁ ଦୁ'ଟି ଗୋଖର ସାପଙ୍କ ଗହଣରେ ପିଞ୍ଜରାବଦ୍ଧ କରି ରଖିଲେ । ଜୀବଟି ପ୍ରଥମେ କେତୋଟି ସାପଙ୍କୁ ଭକ୍ଷଣ କଲା । କିନ୍ତୁ ଅନ୍ୟ-ଗୁଡ଼ିକ ତାହାକୁ କ୍ରମାଗତ ଭାବେ ଭକ୍ଷଣ କରିବାକୁ ଲାଗିଲେ । ଫଳରେ ୪ ଫୁଟ ଲମ୍ବର ଏହି ବେଜିର ଶରୀରରେ ଏତେ ବିଷ ପ୍ରବେଶ କଲା ଯାହାକି ତା'ଠାରୁ ଯଥେଷ୍ଟ ବୃହତ୍ତର ଜୀବ ମନୁଷ୍ୟର ନିଶ୍ଚିତ ମୃତ୍ୟୁର କାରଣ ହୋଇଥାନ୍ତା । କିନ୍ତୁ ଏହା ଦ୍ୱାରା ଜୀବଟିର ବିଶେଷ କିଛି କ୍ଷତି ହେଲା ନାହିଁ । ସେ ତନ୍ମଧ୍ୟରେ ସାଧାରଣଭାବେ ଜୀବନ ଯାପନ କରିବାକୁ ଲାଗିଲା । ଅତଏବ, ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହେଲା ଯେ' ବେଜି ଶରୀରରେ

Digitized by PPRACHIN, SOA

ନିଶ୍ଚିତ ରୂପେ କୌଣସି ପ୍ରକାର ସର୍ପ ବିଷ ନିରୋଧକ ତତ୍ତ୍ୱ ରହିଛି । ଏହାପରେ ଏତାଦୃଶ ଅଦ୍ଭୁତ ଅନେକ ପରୀକ୍ଷା ନିରୀକ୍ଷା ହୋଇ ଏ ସିଦ୍ଧାନ୍ତ ପ୍ରତିଷ୍ଠିତ ହେଲା ।

ବର୍ତ୍ତମାନ ବୈଜ୍ଞାନିକମାନେ ସୋଭିଏତ ରୁଷରେ ବାସ କରୁଥିବା ଏକ ଧୂସର ରଙ୍ଗର ଗୋଧିକୁ ଧରି ତା' ରକ୍ତରେ ଏହି ତତ୍ତ୍ୱର ଅନୁସନ୍ଧାନ ଚଳାଇଛନ୍ତି । ସେମାନେ ଏହାର ସନ୍ଧାନ ପାଇପାରିଲେ ଏବଂ ଉକ୍ତ ତତ୍ତ୍ୱର ରାସାୟନିକ ଗଠନ ଓ ଧର୍ମ ନିର୍ଦ୍ଧାରିତ ହେଲେ ତହିଁରୁ ଅତ୍ୟନ୍ତ ସଫଳ ସର୍ପବିଷ ନିରୋଧକ ଔଷଧ ପ୍ରସ୍ତୁତ ସମ୍ଭବ ହେବ । ପୁନଶ୍ଚ, ତାହାକୁ ସମ୍ପୂର୍ଣ୍ଣ କୃତ୍ରିମ ଉପାୟରେ ମଧ୍ୟ ବିଜ୍ଞାନାଗାରରେ ପ୍ରସ୍ତୁତ କରିବା ଲାଗି ପଦକ୍ଷେପ ନିଆଯାଇ ପାରିବ ।

—୦—

Digitized by PPRACHIN, SOA

# ସାପ ବିଷ ସମବାୟ ସମିତି

ସାପମାନଙ୍କୁ ବଞ୍ଚିବାକୁ ଦିଆଯିବା ଉଚିତ । ସେମାନଙ୍କର ବିଷ, ବିଷ-ପ୍ରତିରୋଧକାରୀ ଶକ୍ତି ଯୋଗାଇଥାଏ । ସାପ କାମୁଡ଼ା ପାଇଁ ଏହାର ଆବଶ୍ୟକତା ଯଥେଷ୍ଟ ବେଶୀ । ଯେଉଁ ଦେଶରେ ବର୍ଷକୁ ହଜାର ହଜାର ଲୋକ ସାପ କାମୁଡ଼ାରେ ପ୍ରାଣ ହରାଉଛନ୍ତି ସେହି ଦେଶରେ ସାପମାନଙ୍କୁ ମାରିଦେବା ଅପେକ୍ଷା ବିଷ ପ୍ରତିରୋଧକାରୀ ଔଷଧ ଅଧିକ ପରିମାଣରେ ରଖିବା ଉଚିତ୍ ।

ବିଶ୍ବାସ କରନ୍ତୁ ବା ନ କରନ୍ତୁ ସାପର ବିଷ ପୃଥିବୀରେ ଏକ ମୂଲ୍ୟବାନ ପଦାର୍ଥ । ହୃତ ଗ୍ରାମ୍‌ର ମୂଲ୍ୟ ପ୍ରାୟ ୧୮ ହଜାର ଟଙ୍କା । ସାପ ଚମଡ଼ାରେ ତିଆରି ହେଉଥିବା ବ୍ୟାଗର ମୂଲ୍ୟ ତାହାର ଏକ ଶହ ଭାଗରୁ ଭାଗେ ମଧ୍ୟ ନୁହେଁ । ତେଣୁ ଏକ ଜୀବନ୍ତ ସାପର ମୂଲ୍ୟ ଦୁନା ପଡ଼େ । ତାମିଲନାଡ଼ୁରେ ବାସ କରୁଥିବା ଇରୁଲ୍ସମାନେ ସାପ ମାରୁ ନାହାନ୍ତି । କାରଣ ସେମାନେ ସାପର ବିଷକୁ ତରଳ ସୁନାର ଆଖ୍ୟା ଦେଇଛନ୍ତି । ପୂର୍ବେ ଏମାନେ ସାପ ଚମଡ଼ା ବିକି ଜୀବନ ଯାପନ କରୁଥିଲେ । ମାନ୍ଦ୍ରାଜ ସହରର ନିହରଗନ ଅଞ୍ଚଳ ସାପଚମଡ଼ା ଓ ପଶୁ ମାଂସ ଗନ୍ଧରେ ପରିପୂର୍ଣ୍ଣ ହୋଇଥିଲା । ୧୯୭୬ ମସିହାରେ ସରକାର ଆଇନ କଲେ ଯେ, ସାପ ମାରିବା ଓ ସାପ ଚମଡ଼ା ବିକିବା ବେଆଇନ କାର୍ଯ୍ୟ । ଏହା ଫଳରେ ସାପମାନଙ୍କୁ ଯେପରି ମନଇଚ୍ଛା ମାରି ଦିଆ ହେଉଥିଲା ତାହା ଆଉ ହେଲା ନାହିଁ । କିନ୍ତୁ ଏହି ଆଇନ ଫଳରେ ଇରୁଲ୍ସମାନେ ଅସୁବିଧାରେ ପଡ଼ିଲେ । ସେମାନେ ବଞ୍ଚିବେ କିପରି ? ସାପ ଧରି ଯେଉଁମାନେ ଜୀବିକା ଅର୍ଜନ କରୁଥିଲେ ଏହି ଆଇନ ଫଳରେ ସେମାନଙ୍କର ବ୍ୟବସାୟ ମାଡ଼ା ପଡ଼ିଗଲା । ସାପ ଧରିବାର ଯେଉଁ କୌଶଳ ତାହା ବୋଧେ ପୃଥିବୀରୁ ଲୋପ ପାଇଯିବ ବୋଲି ଆଶା କରାଗଲା । ଜୀବନ ଧାରଣ ପାଇଁ ଅନ୍ୟ ଏକ ବିକଳ୍ପ ପନ୍ଥା ଦେଖିବାକୁ ହେବ । ଏହା ପରେ ଗଢ଼ି ଉଠିଲା ଇରୁଲା ସାପ ଧରାଳୀ ସମବାୟ ସମିତି । ପୃଥିବୀରେ ଏହା ବୋଧେ ଏକମାତ୍ର ଅନୁଷ୍ଠାନ । ସାପ ବିଷକୁ କିପରି ସାପଠାରୁ ନେବାକୁ ହେବ, ସେହି ବିଦ୍ୟା ସମ୍ପର୍କରେ ଏହି ସମିତି ପଣି ଲାଭ ଉଠାଉନାହାନ୍ତି । ବର୍ତ୍ତମାନ ଏହି ଆଦିବାସୀମାନେ ସାପକୁ ହତ୍ୟା ନ କରି ତାର ବିଷ ସଂଗ୍ରହ କରୁଛନ୍ତି ।

Digitized by PPRACHIN, SOA

୧୯୬୮ ମସିହାରେ ଏହି ସମିତି ଗଠନ କରାଗଲା । ମାଦ୍ରାଜ ଓ ଚିଙ୍ଗଲପେଟ ଅଞ୍ଚଳରେ ୫୨ଟି ପରିବାର ସାପ ଧରିବାର ଲାଇସେନ୍ସ ପାଇଲେ । ସେମାନେ ସମସ୍ତ ପ୍ରକାରର ସାପ ଧରି ସମିତିର ପରୀକ୍ଷାଗାରକୁ ନେଇଆସନ୍ତି । ପ୍ରତ୍ୟେକ ଖଟକଟିଆ ନାଗ ପାଇଁ ୭୦ ଟଙ୍କା, ଚିତ୍ତି ପାଇଁ ୧୫ ଟଙ୍କା ଏବଂ ଗୋଖର ପାଇଁ ୧୫ ଟଙ୍କା ଦିଆଯାଏ । ଏହି ଉପାୟ ସାପ ଧରାଳୀଙ୍କୁ ସାହାଯ୍ୟ ଯୋଗାଇ ଦେବା ପାଇଁ ସମିତି ଚେଷ୍ଟା ଜାରି କରାଯାଇଛି । ପରୀକ୍ଷାଗାରକୁ ସାପ ଆଣିଥିବା ବ୍ୟକ୍ତିମାନେ ନିଜେ ସାପ ବିଷ କାଢ଼ନ୍ତି । ୧୦ଟି ଗୋଖର ସାପଠାରୁ ୧ ଗ୍ରାମ ବିଷ ସଂଗୃହୀତ ହୁଏ । ଏହାର ମୂଲ୍ୟ ୪ଶହ ଟଙ୍କା । କିନ୍ତୁ ସମୁଦ୍ର ସାପମାନଙ୍କଠାରୁ ସଂଗ୍ରହ କରାଯାଇଥିବା ୧ ଗ୍ରାମ ବିଷର ମୂଲ୍ୟ ୧୮ ହଜାର ଟଙ୍କା ।

କେତେକ ପ୍ରତିଷ୍ଠାନ ଅଛି ଯେଉଁଠାରେ କି ସାପମାନଙ୍କୁ ଧରିଯାଇ ସେଠାରେ ରଖାଯାଏ । ସେମାନଙ୍କଠାରୁ ବିଷ ସଂଗ୍ରହ କରାଯାଏ । କିନ୍ତୁ ପୋଷା ଯାଇଥିବା ସାପ ଶୀଘ୍ର ମରିଯାଏ । ଇରୁଲମାନେ ଗୋଟିଏ ସାପ ଧରି ତାକୁ ୧ ମାସରୁ ଅଧିକ ସମୟ ରଖନ୍ତି ନାହିଁ । ଏହି ସମୟ ମଧ୍ୟରେ ସେମାନେ ଧରିଥିବା ସାପଠାରୁ ପ୍ରତି ସପ୍ତାହରେ ବିଷ ସଂଗ୍ରହ କରିନଅନ୍ତି । ସାପଠାରୁ ବିଷ ନେବା ପରେ ତାକୁ ଗ୍ଲୁକୋଜ ଖାଇବାକୁ ଦିଆଯାଏ । ଏହାପରେ ସାପକୁ ତା'ର ନିଜ ଅଭ୍ୟାସ ମୁତାବକ ଖାଦ୍ୟ ଦିଆଯାଏ । ଏହା ଫଳରେ ଧରାଯାଇଥିବା ସାପର ଜୀବନ ପ୍ରତି ବିପଦ ଦେଖାଯାଏ ନାହିଁ ।

ଇରୁଲସମାନେ ଭଲ ମୂଷା ଧରାଳୀ । ମୂଷା ଯେଉଁଠି ଥିବ ସେମାନେ ଶୁଙ୍ଘି କରି ତାହା କହି ଦେବେ । ଲକ୍ଷାଦ୍ୱୀପରେ ମୂଷାମାନଙ୍କର ଦାଉ ଏତେ ବଢ଼ିଗଲା ଯେ, ନଡ଼ିଆଗଛଗୁଡ଼ିକ ପ୍ରତି ଭୟଙ୍କର ବିପଦ ଦେଖାଗଲା । ଗୋଟିଏ ମୂଷା ଧରିଲେ ୧୪ ଟଙ୍କା ଦିଆଗଲା । ଏଥିରେ ମଧ୍ୟ ଇରୁଲସମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲେ । ଏବେ ଇରୁଲନମାନଙ୍କୁ ଅନ୍ୟାନ୍ୟ ସୁବିଧା ସୁଯୋଗ ଯୋଗାଇ ଦିଆ-ଯାଉଛି । ଟାଇଲ ଘର କରିବା ପାଇଁ ସରକାର ପ୍ରତ୍ୟେକ ଇରୁଲସ ପରିବାରକୁ ୫ ହଜାର ଟଙ୍କା ସାହାଯ୍ୟ ଦେଉଛନ୍ତି ।

—*—

Digitized by PPRACHIN, SOA

# ସାପ ସଙ୍ଗୀତ ଶୁଣି ପାରେକି ?

'ନାଗବଲ୍ଲୀ' ଏବଂ 'ସୁନାରଂଫେଣ୍ଡ' ଛବିରେ ସଙ୍ଗୀତ ଗାନ କଲେ ସାପମାନେ ଆକର୍ଷିତ ହୁଅନ୍ତି ବୋଲି କିମ୍ବଦନ୍ତୀ ଅଛି । ଥରେ ମଣ୍ଡିଶୁରର ରାଜକୁମାର ତାଙ୍କ ଦରବାରର ସଙ୍ଗୀତଜ୍ଞଙ୍କୁ ସାଙ୍ଗରେ ନେଇ ନିକଟବର୍ତ୍ତୀ ଏକ ଜଙ୍ଗଲକୁ ଗଲେ । ସେଠାରେ ସେ ଜଙ୍ଗଲରେ ଏକ ମୁଣ୍ଡିଆ ଉପରେ ବସି ସଙ୍ଗୀତଜ୍ଞଙ୍କୁ ଉଚ୍ଚସ୍ବରରେ ଗୀତ ଗାଇବାକୁ ନିର୍ଦ୍ଦେଶ ଦେଲେ । ଦେଖାଗଲା ଯେ—ଗୀତସ୍ବର ଶୁଣିବା ମାତ୍ରେ ନିକଟବର୍ତ୍ତୀ ଗର୍ତ୍ତମାନଙ୍କରୁ ଶହ ଶହ ବିଷଧର ସର୍ପ ବାହାରି ଆସି ସଙ୍ଗୀତଜ୍ଞଙ୍କ ଚାରିପାଖେ ମେଳାକରି ବେଢ଼ି ରହିଲେ । ସମସ୍ତେ ଫଣା ଟେକି ଏକଲୟରେ ସଙ୍ଗୀତ ଶୁଣିବା ଭଳି ଦେଖାଯାଉଥିଲେ । ଏହା ପରେ ଯେତେବେଳେ ଗୀତବୋଲା ବନ୍ଦ ହେଲା, ସାପମାନେ କିଛି କ୍ଷଣ ନୀରବ ରହି ଧୀରସ୍ଥିର ଭାବରେ ସେ ସ୍ଥାନ ଛାଡ଼ି ନିଜ ନିଜ ଗାତ ଆଡ଼କୁ ଚାଲିଗଲେ ।

ସଂସ୍କୃତରେ ବର୍ଣ୍ଣନା କରାଯାଇଛି—ସାପ ସଙ୍ଗୀତ ବଶ । ସଙ୍ଗୀତର ମର୍ମସ୍ପର୍ଶୀ ଶକ୍ତି ଶିଶୁ, ପଶୁ (ମରାଦ ପ୍ରାଣୀ) ଓ ଫଣୀକୁ ଆକର୍ଷଣ କରେ । ଫଳରେ ସର୍ପ ତା'ର ସଙ୍ଗୀତ ପ୍ରିୟତା ଯୋଗୁଁ ଅନେକ ସମୟରେ ଧରାହୁଏ ।

ସାପୁଆ କେଳା ଲାଉତୁମ୍ବା ବଜାଇଲେ ତା' ହାତ ସାପ ଏକଲୟରେ ନାଚୁଥିବାର ଦୃଷ୍ଟାନ୍ତ ଅଛି । କିନ୍ତୁ ଏହା ସମ୍ଭବ କେଳା ହାତ ହଲାଉଥାଏ, ଗୋଡ଼ ହଲାଉଥାଏ, ମାଟି ଉପରେ ଟିପଦାସ ଠକ୍ ଠକ୍ ଶବ୍ଦ କରୁଥାଏ । ଏହା କରିବା ଦ୍ୱାରା ଶବ୍ଦତରଙ୍ଗ ଭୂମି ମାଧ୍ୟମରେ ସାପ ଶରୀରକୁ ପ୍ରଭାବିତ କରେ ଏବଂ ଏହି ଶବ୍ଦ ଶ୍ରବଣ କରିବା କ୍ଷଣି ସାପ ଚଞ୍ଚଳ ହୋଇଉଠେ, ଫଣା ଟେକେ ଓ ମୁଣ୍ଡ ହଲାଏ । ସେହିଭଳି ପେଡ଼ି ଭିତରେ ଥିବା ସାପ ଲାଉତୁମ୍ବା କିମ୍ବା ବଂଶୀର ସ୍ବରରେ ଆକର୍ଷିତ ହୁଏ ନାହିଁ । ଏହି ସମୟ ସାପୁଆ କେଳା ଅଲକ୍ଷ୍ୟରେ ପେଡ଼ିକୁ ଆଘାତ ମଧ୍ୟ କରିଥାଏ । ଏହି ଆଘାତ ଶବ୍ଦରେ ସାପ ମୁଣ୍ଡଟେକି ଫଣା ଉଠାଇ ଆଘାତ କରିବାକୁ ଉଦ୍ୟମ କରେ ଓ ପରବର୍ତ୍ତୀ ଅବସ୍ଥାରେ ମୁଣ୍ଡ ହଲାଇ ଗୀତ ଶୁଣିବା ଭଳି ଅଭିନୟ କରେ ।

Digitized by PPRACHIN, SOA

# ସାପ ଆକ୍ରମଣରୁ ରକ୍ଷା ପାଇବେ କିପରି ?

୧ । ସାପ ବାହାରୁଥିବା ଜଙ୍ଗଲିଆ ଜାଗାରେ ଆଣ୍ଠୁ ପର୍ଯ୍ୟନ୍ତ ବୁଟ୍‌ଜୋତା ପିନ୍ଧି ଚଳପ୍ରଚଳ ହେବ ।

୨ । ଅନ୍ଧାରରେ ଟର୍ଚ୍ଚ ଧରି ଯିବା ଆସିବା କରିବ ।

୩ । ଶୋଇବା ଘର ଆଖ ପାଖରେ ଖାଇବା ଜିନିଷକୁ ଖୋଲା ରଖିବ ନାହିଁ । ଖାଦ୍ୟ ଲୋଭରେ ସେଠାକୁ ମୂଷା ଆସିଥାଆନ୍ତି ଓ ମୂଷାକୁ ଖାଇବାକୁ ତା' ପଛେ ପଛେ ସାପ ଆସି ଯାଇପାରେ ।

୪ । ହଠାତ୍ ସାପ ଦେଖିଲେ ଚଳଚଳ ନ ହୋଇ ଛିଡ଼ା ହୋଇଯିବ । ସାପ ଉପରକୁ ରୁମାଲ୍, ଗାମୁଛା ବା ଅନ୍ୟ ଜିନିଷ ପକାଇଦେଲେ ତା'ର ଦୃଷ୍ଟି ସେଇଆଡ଼କୁ ବୁଲିଯିବ ଓ ଏହି ସମୟରେ ନିଜେ ଖସି-ଯିବା ସମ୍ଭବ ହୋଇପାରିବ ।

୫ । ପ୍ରତି ଗାଁରେ ବା ନିକଟସ୍ଥ ସ୍ୱାସ୍ଥ୍ୟ କେନ୍ଦ୍ରରେ ଗୋଟିଏ ଦୁଇଟି ଆଣ୍ଟିଭେନମ୍ ଇଂଜେକ୍‌ସନ କିଣି ରଖିଲେ ତାହା ବିପଦଆପଦରେ କାମରେ ଲାଗି ପାରିବ ।

ଯେଉଁ ସ୍ଥାନରେ ସର୍ପଦଂଶନର ପ୍ରାଦୁର୍ଭାବ ଅଧିକ ସେଠାରେ ତଳେ ଭୂମି ଉପରେ ନଶୋଇ ଖଟ ବା ଖଟିଆ ଉପରେ ଶୋଇଲେ ଭଲ । ସାପ ମୂଷା ଖାଇବା ପାଇଁ ଘରେ ପଶେ ।

୬ । ଉଷୁମ ପାଇଁ ତଳେ ଶୋଇଥିବା ଲୋକର ବିଛଣା ତଳେ ଆସି ଆଶ୍ରୟ ନିଏ । ନିଦ ଘୋରରେ ଲୋକ ଗଡ଼ ଲେଉଟାଇଲେ, ସାପ ଆଘାତ ପାଇ କାମୁଡ଼େ ।

Digitized by PPRACHIN, SOA

୭ । ସାପ ଲମ୍ବାଳିଆ ପ୍ରାଣୀଟିଏ । ତଦନୁସାରେ ତା'ର ଫୁସ୍‌ଫୁସ୍ ମଧ୍ୟ ଲମ୍ବା ଓ ଦେହର ୨/୩ ଅଂଶ ସ୍ଥାନରେ ବ୍ୟାପ୍ତ । ଅଜଗର ପରି ବଳିବାନ ସାପଟିଏ ଦେହରେ ଗୁଡ଼ାଇ ହୋଇଗଲେ ଜୀବନ ବଞ୍ଚାଇବା ପାଇଁ କୌଣସି ଏକ ଦାନ୍ତୁଆ ଅସ୍ତ୍ର ଦ୍ୱାରା ତା' ଦେହର ଏକ ଧିକ ସ୍ଥାନରେ ଜୋରରେ ହାଣି ଫୁଟାଇ ଦିଅ । ଫୁସ୍‌ଫୁସ୍ ଆଘାତ ପ୍ରାପ୍ତ ହେଲେ ତା'ର କୁଣ୍ଡଳୀ ଢ଼ିଲା ହୋଇଯିବ ।

୮ । ବର୍ଷାଦିନେ ଧଣ୍ଡସାପମାନେ ଘର ଭିତରକୁ ପ୍ରବେଶ କରିଥାନ୍ତି, ଖରାଦିନେ ଗାଧୁଆ ଘର ପାଣି କୁଣ୍ଡରେ ବେଳେ ବେଳେ ଧଣ୍ଡସାପ ପଶିଥାଏ । ଏହା ଏକ ବିଷହୀନ ସାପ । ଏଥିରେ ଭୟଭୀତ ନହେ ଇ ସାମାନ୍ୟ ଟିକେ ଫିନାଇଲ୍ ଢାଳଦେଲେ ଏହା ଦୁର୍ଗନ୍ଧରେ ସାପ ପଳାଇଯାଏ ।

୯ । ସର୍ପବହୁଳ ଅଞ୍ଚଳରେ ନଳାମୁହଁ, ଘର ଭିତରୁ ପାଣି ନିଷ୍କାସନ ପଥକୁ ତାରଜାଲି ଦ୍ୱାରା ବନ୍ଦ କରିବା ଉଚିତ୍ ।

୧୦ । ଜଙ୍ଗଲର ଅଧିବାସୀମାନେ ତଥା ଗାଁ-ଗହଳର ଲୋକମାନେ ଘର ଦୁଆରପାଖ ଗୋବର ପାଣି ସିଞ୍ଚିଥାନ୍ତି । ଏଥିରେ କାର୍ବୋଲିକ୍ ଏସିଡ଼୍ ଥିବା ହେତୁ ଏହା ଗନ୍ଧରେ ସାପ ଅଗଣାକୁ ପଶେନାହିଁ ବୋଲି ବିଶ୍ୱାସ କରାଯାଏ ।

୧୧ । ଗାଁ ଗହଳରେ ଧାନଗଦା ମାଟି ଉପରେ କରିଥାନ୍ତି । ଧାନ ଖାଇବା ପାଇଁ ମୂଷା ବାସ କରେ । ମୂଷା ଖାଇବାପାଇଁ ସାପ ଧାନ ଗଦାରେ ପଶେ । ଅତଏବ ଧାନଗଦା ଭୂମି ଉପରୁ ଉଚ୍ଚ କରି ଦୁରରେ କରିବା ଉଚିତ୍ । ଅମାରରେ ଯେପରି ମୂଷା ନ ପଶେ ସେଥିପ୍ରତି ଯତ୍ନବାନ୍ ହେବା ଉଚିତ୍ ।

*

Digitized by PPRACHIN, SOA